


( ଚତୁର୍ଥ ଖଣ୍ଡ—ପଲ୍ଲୀଗୀତ )

କବିଚନ୍ଦ୍ର

**କାଳୀଚରଣ ପଟ୍ଟନାୟକ**

ନାଟ୍ୟାଚାର୍ଯ୍ୟ

ପ୍ରକାଶକ :—

[illegible] ବୁକ୍ ହାଉସ୍

— କଟକ-୨ —

ପ୍ରଚ୍ଛଦପଟ :

ଶ୍ରୀ ଅସିତ୍ ମୁଖାର୍ଜୀ

ଶୀଳ୍ପରୂପମ୍

କଟକ-୨

ମୁଦ୍ରାକର :

ଶ୍ରୀ ଅଜୟକୁମାର ଘୋଷ

ଶ୍ରୀ ହରନାଥ ପ୍ରେସ

କଟକ-୨

ପ୍ରଥମ ମୁଦ୍ରଣ :

୧୯୬୭

ଦଶହରା

ମୂଲ୍ୟ : କୋଡ଼ିଏ ଟଙ୍କା

# ଭେଟି

ମୋର ବନ୍ଧୁ ଶ୍ରୀ ଗୋକୁଳଚନ୍ଦ୍ର କରଙ୍କ ସସ୍ନେହ ତାଗେଦା-ଫଳରୁ କେତେ ଥୁଅ-ପୁରୁଣା ପଲ୍ଲୀସ୍ୱରର ଗୀତ ବହୁତ କାଳର ଟିପା-ଖାତାରୁ ଗୋଟେଇ ସାଉଁଟି ଗୀତାବଳୀର ଚତୁର୍ଥ ଭାଗ ପ୍ରକାଶିତ ହେଲା । ଦେଖିଲି, 'ଗୋକୁଳ କରେ' ଅଳସୁଆ ବୁଢ଼ା ଘୋଡ଼ାକୁ ଗୃବୁକ ମାରିବାରେ 'ସାବାସ' ପଦ ନେଲବାଲା ।

ସରଳ, ତରଳ ମନକଥା ଠୁଳାଇ ଗଢ଼ିଉଠିଛି ପଲ୍ଲୀଗୀତ । ପାହାଡ଼ୀ ଝରଣାପରି ସେ ସ୍ୱାଧୀନ, ସ୍ୱର-ତାଳର ବାଧାବନ୍ଧନକୁ ପସନ୍ଦ କରିବାର ଡର ନଥାଏ ତା'ର । ତାକୁ ଅମାନିଆଁ ବୋଲ, ଅବା ଅବୋଲକରା କହ, ବାକି ଏକଥା ସତ ଯେ ସବୁରିଠାରୁ ସେ ଭରି ଆଦର ପାଏ । ମନ ଲୁଚାଇବାକୁ ଦାନ୍ତଚିପା କଥାକୁହା ସେ ଜମା ପସନ୍ଦ କରେ ନାହିଁ । ଗୀତ-ପଣ୍ଡିତମାନଙ୍କ ଭାଷାରେ ପଲ୍ଲୀଗୀତ ଶାସ୍ତ୍ରୀୟ ସଙ୍ଗୀତରେ ଫାଦ ମାଡ଼ନାହିଁ । ହେଲେ ଏକଥା ଜମାଣିବାକୁ କଣ କାହାର ଗୃବ୍ ଅଛି ଯେ, ପଲ୍ଲୀଗୀତ ଶାସ୍ତ୍ରୀୟ ସଂଗୀତ—ଗଛମୂଳର ଜନମ-ପାଣି ? ପିଲାଏ ସୁନା କୁଲେଇ ରୁପା କୁଲେଇ ଧରି ଖେଳୁଥାଆନ୍ତୁ ପଛକେ ସାହୁତର ସେଇ ଟସଇ ପଲ୍ଲୀଗହଳ—ରହଣୀ ମଳିମୁଣ୍ଡିଆର ହାଡ଼ମୁଣ୍ଡକୁ ଭରସା ।

ଗୋଟାଏ ଜାତିର ଗୃଲି-ଚଳଣୀ, ଢଙ୍ଗରଙ୍ଗ, ଆଉ ମନ-ଗହନର ପରିଚୟ ଦିଏ ପଲ୍ଲୀଗୀତ । ଆମ ଓଡ଼ିଶାରେ ଏମିତ ବହୁତ ଜାତିର ଲୋକ ଅଛନ୍ତି । ଆଦିବାସୀ ତ ଓଡ଼ିଶାର ସବୁ ଅଞ୍ଚଳରେ ବସବାସ କରିଛନ୍ତି : ରୀତି ଓ ଚଳଣୀ ତାଙ୍କର ନିଆରା ନିଆରା

ହେବା ସ୍ୱାଭାବିକ । ଭାଷା ଓ ମନର ଭାବ ପ୍ରକାଶଲାଗି କଥାକୁହା ଢଙ୍ଗରେ ତାଙ୍କର ସ୍ୱତନ୍ତ୍ରତା ଅଛି । କଥା ବା ପଦ ସ୍ୱରର ସାହାଯ୍ୟ ନେଇ ରସ ବା ଭାବ ଫୁଟାଏ । ଏଇ ସ୍ୱର-ସମ୍ପଦରେ ଆମ ପଲ୍ଲୀଗୀତର ଗନ୍ତାଘର ଉଚ୍ଛୁଳ ଉଠୁଛି । ଖାଲି ଆମେ ତାକୁ ଆଦର କରି, ଘଷାମଜା କରି, ରଖିଥୋଇ ବେଉଣ୍ଟ ଜାଣିଲେ ଘର-ବାହାରିଆ ଲୋକଙ୍କ ଆଖି ସହଜରେ ଫିଟିଯିବ ।

ଏବେ ପଲ୍ଲୀସ୍ୱରର ଆଦର ଦିନକୁ ଦିନ ବଢ଼ୁଛି । ତରଳ ମନ, ସରଳ ପଦ, ସହଜ ଭାବ—ଏଇତ ପଲ୍ଲୀଗୀତର ନିତଦିନିଆଁ ସାଥୀ । ଅଡ଼ବାଙ୍କ ଗୃଲ୍ପ ତାର ପସନ୍ଦକୁ ପାଏନାହିଁ । ମୁଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଛି, ଏଇ ସ୍ପୃହା ଅନୁସରିବାକୁ । ହେଲେ ସବୁବେଳେ, ସବୁଠିଁ—ପାରୁଛି ବୋଲି ମନେ ହେଉନାହିଁ ମୋର ।

ଭେଟୁଛି ମୋ ଜାତ ହାତରେ ସେଇ ବଣଫୁଲରୁ କିଛି । ଏଥିରୁ ଅନେକ ଫୁଲରେ କେତେ ସୁଖ-ଦୁଃଖର ଅଭୁଲା ସ୍ମୃତି-ଅତର ବୋଳା ହୋଇଛି । ପ୍ରାୟ ବର୍ଷ ୪୦।୪୫ ତଳିଆ ମୋର ଗୋଟିଏ ଗୀତର ମୂଳ ଧାଡ଼ିକ ହେଜୁ ହୋଇଗଲା ଯେ—ଲେଖିଛି :—

'ମନୁ ଭୁଲେ ଦେ' ନଭୁଲେ ଅତୀତ ଗୃହୁ ଘର ।' —ସେଇ ଭଲାଦିନ—ଅତୀତକୁ ଜୁହାର, ସେଇ 'ଦେ ନଭୁଲେ' ଭିତରେ ଜଣେ ମୁଁ । ତାକୁ ପାଶୋରିଦେଲେ କି, ଅଉ ଥାଇତ ହେବାର ଆଶା ଥାଏ ? ମୂଳରୁ ସିଅ କାଟିଦେଲେ ଗଛ ଜୀଇବ କେମିତ ?

ଜୁହାରୁଛ ତେଣୁ,

—ସେଇ ଅତୀତକୁ

—ସେଇ ଗଲ୍ପଦନକୁ,

—ସେଇ ମୂଲକୁଅକୁ ।

ବଡ଼ ଦୁଃଖରେ କହୁଛି :—

ଗୀତର ନମ୍ବର ଛାପିବାରେ ଛାପାଖାନାଅଡ଼ୁ କିଛିଏ ଏପଟ ସେପଟ ହୋଇଯାଇଛି । ତେଣୁ ପୃ ୧୦୬ ଷ୍ଠାଠାରୁ ପୃ ୧୭୬ ଷ୍ଠା, ପୁଣି ପୃ ୧୯୩ ଷ୍ଠାଠାରୁ ପୃ ୨୦୮ ଷ୍ଠାମାନଙ୍କରେ ଥିବା ଗୀତ ଉପରର ନମ୍ବର ସୂଚୀପତ୍ରରେ ଦିଆହୋଇଥିବା ଗୀତଗୁଡ଼ିକର କ୍ରମିକ ସଂଖ୍ୟା ଅନୁସାରେ ଦେଖିନେବେ ।

କାଳୀଚରଣ

୨୪ । ୯ । ୭୭

# କବିଚନ୍ଦ୍ର ଗୀତାବଳୀ

( ପଞ୍ଚମ ଖଣ୍ଡ )

❊ କୀର୍ତ୍ତନ ଓ ଛାନ୍ଦ ବିଭାଗ ❊

—ମୁକ୍ତି-ପଥେ—

# ସୂଚୀ

।

---

ଫଁଟା ମୋ କୁଳ ନାଅଟି
ଭସାଇ ଦେଲି ଅଥଳ ଜଳେ,
ହାଲୁକା କିଏ ଦେଲାରେ
ଏ ନାଅ ବାହୁଡ଼ା ବେଳେ ? ।୦।

ପାଣି ଭ କଳା ଭଅଁର
ଛାତଟି ଘ୍ନେଟିଅ ମୋର
ଅଗୁଅ ପିଠୁଚ ବାଅ
ଏ ଦାଉ କିଏ ସମ୍ଭାଳେ ।୧।

ବେ-ବାଗିଅ ଅନ୍ଧୁଲଟା
ମାରୁଛି ବରଷା ଛଟା,
ଢୋଡ଼ ମୁହେଁ ପଡ଼ୁଛି ଏକା
ଜୀବନର ସଞ୍ଜବେଳେ ।୨।

ହାତ ନାଏ କୋଲ୍ ମାଇ
ସଭ୍ଏଁ ହେଲେ ଭଗାଇ,
ବୁଡ଼ିଲା ବୁଡ଼ିଲା ଭେଲା
ଅସ ସାଥୀ ଏବେ ହେଲେ ।୩।

---

( ୬ )

ସେ ନହୁଲ ବୟସୀ ଛଇଲା,
ନଈକୂଳେ, ସଞ୍ଜବେଳେ କାହିଁକି ଚାହିଁଲା ରେ ।୦।
ଅମାନିଆ ପବନଟା—ବହୁ ଶିରଶିର
ଫୁଟାଇଲା ତା ଗୀତରେ ପଦ୍ମଫୁଲ ବାଡ଼େ ରେ
କୋଇଲିଟା ଥିଲା ଚାହିଁ ରେ
ଟାହି ଭଳି ଅମ୍ବଡାଳୁ ଛୁହାଇ ଛୁହାଇ ରେ
କୁହୁ, କୁହୁ, କୁହୁ କହି ରେ ।୧।
ତର ତ ସହିଲା ନାହିଁ ସମ୍ଭାଳିବ କାନି
ଚାହିଁଦେଲା ଆଖିରେ (ମୋ) ଆଖି ମିଶିଲାନି ରେ
ମହୁବୋଳା ଯଉବନରେ,
ତାକୁଥିଲା ଥୋପି ଥୋପି ( ତା ) ଲାଜୁ ନୟନ ରେ,
ପିଇଦେବା ହେଲା ମନରେ ।୨।
ଅଧରକେ ଢାଳିଗଲା କଳସୀକୁ ପାଣି,
ଓଦା ଶାଢ଼ି ତଳୁ ତନୁ ଫୁଟି ଦିଶିଲାଣି ରେ,
ମନ ମୋର ହେଲା କେତେ ରେ,
ଚିପୁଡ଼ି ଦେବି କି ଯାଇଁ ତା ପାଲିଟା ସତେ ରେ ।
କହି ଦିଅନ୍ତା କି ମୋତେ ରେ ।୩।
ଅନାଇଁଣି ମୋର ସତେ ହେଲା ତା ଡଗାର
ପିନ୍ଧାଇଲା ଫାସ ତାକୁ ଲାଜର ଶିକୁଳି ରେ,
ପାଦେ ପାଦ ଗଲା ଲାଗି ରେ,
କାହାକୁ ଦୋଷିବି ଏବେ—ମନ, ନାଁ ମୋ ଆଖି ରେ,
ପଳାଇ ନ ପାରେ ସଖୀ ରେ ।୪।

---

ସଙ୍ଗୀତ,

ମନା କରିଦେବୁ ସତେ ତାକୁ ।
ବେଳ ବୁଡ଼େ ନ ଆସିବ ଅଉ ଏ ଭୁଠକୁ (ସଙ୍ଗୀ)
ଫେରି ଫେରି ନ ଚାହିଁବ ଆଉ ମୋ ଆଡ଼କୁ ଲୋ ।୦।

ଘୁଣ୍ଟ ପାଣିରେ ଠାଏଁ
କଳା ଅଖି ଦୂରୁ ଚାହେଁ
ଓଦା ଲୁଗା ଦେଖେ ଭଲ ଲାଗିବ ତାହାକୁ ଲୋ ।୧।

ଘୋଡା ମାରି ଆସେ ଚାଲି
ଧନେ ଧନେ ନାଅ ମେଲି
ଚାହାନ୍ତି ଧାଏ ମୋର କୋଳ କଳସୀକୁ ଲୋ ।୨।

ପାଣି ତଳେ ଲୁଚି ଥାଇ,
କାନ୍ଥ ଟାଣି ଝରେ ଟାହି
ଫିଟାଇ ନ କହେ କାହିଁ ମନଟି ତାହାକୁ ଲୋ ।୩।

ଥିଲେ ସେ ଗୋ. ଆଉ କୂଳେ
ଭରି କଳସୀ ମୋ ତଳେ
ଲେଉଟି ମୁଁ ଯାଏ ପୁଣି ପାଣି ଅଣିବାକୁ ଲୋ ।୪।

ହଟହଟା ହେବ ଦେଖେ
ଯାହା ମନ ମାଗୁ ମୋତେ
ତାହିଁକି ମୋଠାରେ ବାଦ ପଡୁଛି ତାକୁ ଲୋ ।୫।

———

ମୁଁ ତ ହେଳାରେ ପାଶୋର ଦେଲନାଁ
କାଳ-କରଞ୍ଜମାଳ ।୦।

କଂସାକୁ ଛାଡିଅ ହାଇଁ
ଫୁଲ ସଞ୍ଜବେଳୁ ଅସିଛୁ ଧାଇଁ
(ଖଲ) ତୁମ ଦରଶନ ପାଇଁ ନାଁ—
କାଳ-କରଞ୍ଜମାଳ ।୧।

ବାଳଅ ମାଛର କଣ୍ଟା
କହୁଥିଲ ଧନ, ରଖିଛୁ କଥା
(କାହିଁ ?) ଅଣିଛୁ ଦକ୍ଷିଣୀ ମଠା ନା—
କାଳ-କରଞ୍ଜମାଳ ।୨।

କଜଳ ଗଛର ଘୁଲ,
ଶହେ କୋଶ ପଥ ଅଣ୍ଟିଲା ନାହିଁ
(ଧନ) ତୋ ମୁଖ ଚନ୍ଦ୍ରମା ଗୁହିଁ ନା,—
କାଳ-କରଞ୍ଜମାଳ ।୩।

ମନଟି କାହିଁକ ମାରୁ
ଏଇଥର ନେବ ବରମପୁରୁ
(ଖାଲ) ଧାନ କଣ୍ଠାକଟି ସବୁ ନା—
କାଳ-କରଞ୍ଜମାଳ ।୪।

ପାଚଲା ନାହାଲ ବେଲ,
କଣ୍ଟ ଦେଇଥିଲ ଅସିବ ବୋଲ
(ସାର) ଘତ ଗୁହିଁ ଗୁହିଁ ମଲି ନା—
କାଳ-କରଞ୍ଜମାଳ ।୫।

ଛଇଲ ନାଗର କହ୍ନା
ଘଦାଢଅ ପଣ ପଣ୍ଡିଲା ରାଧା
(ମୋତେ) ଗୋପଦାଣ୍ଡେ ହେଲୁ ମନା ନା—
କାଳି-ଭରଞ୍ଜିମାଳି ।୬।

ବଙ୍କଲ ଟଗର ଗୁଛ,
ନାହିଁ କରଦେଲେ ରୁଷଚନ୍ତ ନାଇଁ
(ଜଗି) ବସିଲି ମୁଁ ତୋହ ପାଇଁ ନା—
କାଳି-ଭରଞ୍ଜିମାଳି ।୭।

ବାଛୁ ଚାଛୁ ସକ ମଲ୍ଲି
ଗୁନ୍ଥି ରଖିଥିଲି ଦେଇବା ବୋଲି
(ଧନ) ମନ ମାରି ବସିଗଲି ନା—
କାଳି-ଭରଞ୍ଜିମାଳି ।୮।

ଢ଼ହଢ଼ ମାଣ୍ଡିଅ ଖାଢ଼
ଉହଲ ଖଇଲ ହୁଅନା ଅଉ
(ରହ) ଅଉ ଦନାକେତେ ଯାଉ ନା—
କାଳି-ଭରଞ୍ଜିମାଳି ।୯।

— ——

( ୫ )

ଘନଘନ ମନ—ଛନ ଛନ ଧନ,
ଭୁଲି ନ ସରଇ ଧନ,
ସତେ କି ତୋତେ କେ ମୂର୍ଚ୍ଛି ରହିବ ?
ଯୋଡ଼ା ବାହୁ ଏକା ହେଲା ବାମ ଲୋ,
ଜୟ-କମଳମୁହିଁ,
ଜୀବ ଯିବ ତୋ ପଥ ଅନାଇଁ ଲୋ—
ଜୟ-କମଳମୁହିଁ ।୧।

ଧନ ଧନ ମନ-ଭାବ ଭାବ ମନେ
ରଚସି ରହିଛ ଗୋସି,
ବଶୀ-ହରଣୀ ତୋ ଗୃହିଣୀ-ଛଟକ
ମୋର ମରମ ଦଏ ବଦାର ଲୋ,
ସତେ ହର-ଗଜସ୍ତି,
ମୋର ଶୁଣିବେ ମନ ଗୁହାସ୍ତି ଲୋ,
ସତେ ହର-ଗଜସ୍ତି ।୨।

ନହୁଲି ବୟସି, ଅଳପ ହସି କୁ
ଫେରାଇ ନେଲେ ନୟନ,
କଳା ବଉଦରେ ରହିଛ ବିଜୁଳି
(ସତେ) ଖେଳେ ପରି, ଭୁଲେ ମନ ଲୋ,
କୁନ୍ଦ କୁନ୍ଦନଦେହୀ,
ନେଳୀ ଶାଢ଼ୀ ଘଉନ ଧରି ଲୋ,
କୁନ୍ଦ-କୁନ୍ଦନଦେହୀ ।୩।

ଛଳିଲା ରେ, ମୋର କରମ ଅବଳ
ତୋତେ କି ନନ୍ଦବ ସଙ୍ଗ,
ଛଣା ମନ୍ଦ ପଣା ଗୃଣିବା କାଳରେ
(ସତେ) ଦୂର ହେଲ ଦେଖାଦେଖି ଲୋ,
ଆଉ ପାଇବୁ କାହିଁ ?
ଅଜ୍ଞ କଥା ତ କାଲିକି ନାହିଁ ଲୋ,
ଆଉ ପାଇବ କାହିଁ ? ।୪।

---

( ୭ )

କେ ସତେ ମୁରଲୀ ବଜାଏ,
ନିତି କୁଞ୍ଜେ ସାରା ରାତି, ଅରେ···
ବରଜ ବନ ଚମକାଏ··· ।୦।
ଶ୍ୟାମତନୁ ପୀତଧଡ଼ା, ମୟୂର ଚୂଡ଼ା ରେ
ଗଳେ, ହାର ଗଜ-ମୋତି, ଅରେ···।୧।
ଖଗ ମୃଗ ପଶୁ ହେଲେ, ଶୁଣି ସେ ଧ୍ୱନି ରେ
ଦେଖି, କା'ର ସନ୍ଦେ ସ୍ଥିତି, ଅରେ···।୨।
ସତୀ ମତି ଭୁଲାଏ ସେ, ମୋହନ ସୁରରେ
ମାରେ, ମାର ସତେ କାନ୍ତି, ଅରେ···।୩।
ରାଧା ରାଧା ରାଧା ବୋଲି, ମୁରଲୀ ବାଏ ରେ
ସାରେ ଲାଜ, ମାନ, ଜାତି, ଅରେ ।୪।
ଭୁଲେ ଭୋକ, ଭୁଲେ ଶୋଷ, ନିଦ ତ ଭୁଲେ ରେ,
ପଡ଼େ, ମନେ ତାର ସାଥୀ, ଅରେ···।୫।
( ବରଜ ବନ ଚମକାଏ ॥ )

---

( ୬ )

ମାଟିର ମାୟା—ମାଟିର ଛାୟା
ଜାଗରେ, ଶୟନେ ନିଶିଦିନେ ଗୋ
ସପନ ଛଳେ ସେଇ ତା' ଗ୍ରାଇ ଧରେ ।୦।
ସେଇ ବଣୁଆ ଝରଣା ସୁଅ କୋଇଲି ଗୀତ ଶୁଣେ
ସେଇ ଭଅଁର କୁଞ୍ଜ କୋଣେ ଗୁଣୁଗୁଣୁ ଗୁଣେ;
ଟେଣ୍ଟୋଇଠା ଚନ୍ଦ୍ରତଳେ ଝୁରେ
ପଲ୍ଲୀ ଛୁଇଁ ସେଇ ମଳୟ ବୁଲେ
ସେଇ ପୁରୁଣା ରଙ୍ଗରବି (ନିତି) ନଅ ମୋ ଆଖିରେ ଗୋ ।୧।
ଝମଝମ ସେଇ ବରଷା-ରାତି ଘଡ଼ଘଡ଼ ଚମକାଏ
ସେଇ ବିଜୁଳି ଚମକି ଉଠେ ବେଙ୍ଗ ତାଳ ଦିଏ
କନ କନିଆ ଶୀତ ଅଙ୍ଗେ ଲାଗେ
ଗଳ୍ପ କଥା ପୁଣି ମନେ ଜାଗେ,
ଥୁଅ-ପୁରୁଣା ନୂଆ ପର ସାଜେ ଜନ୍ମା ଘରେ ଗୋ ।୨।
ଏଇ ମାଟିରେ ଜନ୍ମ କେତେ ବଡ଼ୁଆ ବପୁଆ
ହଂସା ଛାଡ଼ି ସେବା ପଣ ଏଇ ମାଟିର ଦୁଅ,
ଏଇ ମାଟିରେ ଜଗନ୍ନାଥ ଘର
ମୁନି ଋଷି ଅଜର, ଅମର
ଏଇ ମାଟିରେ କାହ୍ନୁ ପରି ଲହୁଣି ସର ଝୁରେ ଗୋ ।୩।
କିଏ ମୋତେ ତ କହୁଥିଲା ରେ, ପଞ୍ଜୁରୀର ଶାରୀ
ମାଆ ଦେଲା ମୋ ମଥାରେ ହାତ ଫିଟିଗଲା ଶିକୁଳି ।
ମନ୍ଦିରେ ମୋ ଘଣ୍ଟା ବାଜେ ନିତି
(ପାରେଁ) ମା' ଦୁଆରେ ଖୋଲା ହାତ ପାତି
ଏଇ ମାଟିରେ ଜନ୍ମ ମୋର, ଏଇ ମାଟିରେ ମରେଁ ଗୋ ।୪।

———

(୮)

ସପନେ ମିଳନ ଅଖି—ସପନ ହେଲା ତ ସଖି,
ନୀର ଧାରେ ଗୋ, ମୋର ଶେଜ ତ ତିନ୍ତିଲା—
ସଖି, କାଳିଆ ନଇଲା,
ମୋର, ନାଗର ନଇଲା ।୦।
ସେଇ ସେ ନାଗର ରାଜା—ବଜାଏ ମୁରଲୀ ବାଜା,
କୁହୁ କୁହୁ ଗୋ, ବନ କୋଇଲି ଡାକିଲା—
ସଖି, କାଳିଆ ନଇଲା.
ମୋର, ନାଗର ନଇଲା ।୧।
ଜୁଇ ପର ପାଖେ ପାଖେ—ଅଖିରେ ତା ଅଖି ଲାଖେ,
ଘର କୋଣେ ଗୋ, ଲୁଚି ନୟନ ଠାରିଲା—
ସଖି, କାଳିଆ ନଇଲା,
ମୋର, ନାଗର ନଇଲା ।୨।

---

(୯)

କୁହୁଡ଼ି ଘେରା କୁଞ୍ଜ ତଳେ,
ବଉଳ ଗଲା ଜୁଇ ରେ,
ମାରିଲା ଶୀତ ହାଇ ।୦।
କନକନିଆ ବାଆ ନେଲା ଦଯଣା ଉଡ଼ାଇ,
ମହକାଇଲା ବନଟା ସାରା ମନଟା ଚମକାଇ ରେ ।
ଧାଇଁଛୁ ଶୀତ ଜୁନଅଁ ଜୁଡ଼ .
ତରଛେ ପଛକୁ ଚାହିଁ,
ଦଉଡ଼େ ତାକୁ କୋଇଲି ରାଗେ
କୁହୁ କୁହୁକୁ କହୁ ରେ ।୧।

ହାସ୍ୟରେ ଙ୍ଗୃରେ ଚମ୍ପାଗୋରୀ ନହୁଳି ବୟସ ତାର
ଭଣ୍ଟଦେଇ ରହିଲା ହୃଦେ ପରଦେଶୀ ନାଗର ।
ମହୁଆ ବାଅ କହିଲା ତାକୁ,
କିଏ ଦେଲା ଭୁଲାଇ ରେ,
ଗୁଲ୍ଲି ନିଦ ତ ତଇସି ତାର
ସପନ ସାଥି ହୋଇ
ଛପିଛପିକା ମାଣୋର୍ କଥା—ଥରେଥରେ ଭେଟାଇ ରେ ।୨।

---

( ୧୦ )

କଳସି କାଖେ କିଏ          ଯାଏ ହସି ହସି ସତେ
ରହିଁ ନ ପାରଲି ଭରସି ।୦।

ଖେଳାଇ ଗଲା ଆଖି ଡୋଳା
କଳା ଭଅଁର ସତେ ।          ମନେ ହେଲା ପରତେ
ମୋ ତୁଲେ ଅହନ୍ତା ସାଧିଲା
ମୋ ମୁଖ ଚୁନା କରି—          ଦେଲା ଆସି କି ଭାଳି
କମଳ ମୁଖକୁ ପରଶି ।୧।

ଆଖି ତଳରେ କେତେ କଥା,—
ଲେଖି, ସେ ଦେଇଗଲା ବ୍ୟଥା
ଥରିଲି ତା ଅଧରେ          ହସ ରଖି ଅଧରେ
ସପନେ ସରେ ସାରା ଜାଣି
ଢଣ୍ଡି ଢଣ୍ଡିକେ ଯାଏ ଦଶି ।

---

( ୧୧ )

ରସ, ଦେ' ଝମକାଇ ଲୋ,
ଝୋପି ମେଘ ବରଷିଲା
କାଳିଆ ବଉଦ କାନ୍ଧି ଅଝୁଅଝୁ
ନୂଆ ବୋହୂ ହସିଦେଲା । ୧ ।
ରସ, ଦେ' ଝମକାଇ ଲୋ,
ବିଜୁଳି ଚହଟିଗଲା
ଘଡ଼କେ ଘଡ଼କେ ଘଡ଼ଘଡ଼ି ଶୁଣି
ଝୁଅ ବୋହୂ ମୋହଗଲା । ୨ ।
ରସ, ଦେ' ଝମକାଇ ଲୋ,
ହାତର ବାଙ୍କେଣି-ବଳା,
ଠାର ବାରି ତୋର ଆସିବ ନାଗର,—
ଚହଟ ଚକ୍‌କଣୀ କଳା ।୩।
ରସ, ଦେ' ଝମକାଇ ଲୋ,
ଆଜ ଗୁରୁ ଖୋଜ ବାଙ୍କ,
ଥିର ଥିର ପାଦ ପକା ଲୋ ସୁନ୍ଦରୀ,
ନଣନ୍ଦେଇ ଥିବ ଝାଙ୍କ ।୪।
ରସ, ଦେ' ଝମକାଇ ଲୋ,
ଥାକ ମାରି କାହିଁ ଯାଉ
ବାଟ ଚାହିଁ ତୋର ବସିଛି କାଳିଆ
ଡେରି ନକର ଆଉ ।୫।

———

( ୧୨ )

ନବୀନ ନୀଳଘନ ନୀଳ ମାଧବ ସ୍ଥିର,
ଲୁଚିଯିବ ରବି ଛବିକି ଗ୍ରହି ।୦।
ନୀଳ କନ୍ଦରରେ ବିଜୟ ମଣିମା ।
ପତିତପାବନ ବାନା ଉଡ଼ାଇ,
ପତିତ ଜନର ଚିତ୍ତ ତ ସତତ,
ମହତ ରଖ ତ ମୋର ଗୋସାଇଁ ହେ,
ମୁଁ, ଚରଣ ଛୁଇଁ,
ସତ କହୁଣଇଁ,
ମୋ ପରି ପତିତ ଜଗତେ ନାହିଁ,
କହ, ତାରିବ କି ଥିବ ମୁହିଁ ଲୁଚାଇ ହେ ।୨।

—— ——

( ୧୩ )

କୁଅଁର ପୁନେଇଁ ଜହ୍ନ ଲୋ—ଫୁଲ ବଉଳବେଣୀ ।
ଫୁଲ ପରି କରି ଝେଙ୍କ ଧରିଥିଲି,
ମନ ନ ଚହ୍ଲିଲେ ଧନ ଲୋ—ଫୁଃ ବଃ ।୧।
ଜହ୍ନିଫୁଲ ଗନ୍ଧଗନ୍ଧ ଲୋ—ଫୁଲ ବଉଳବେଣୀ ।
ଅଣିଥିଲେ ଧନ ଫୁଲ୍ଲରି-ଢେଲ ତ,
ଖୋସା ବାସେ ମହମହ ଲୋ—ଫୁଃ ବଃ ।୨।
ନନା ଯାଇଥିଲେ ବୁଲି ଲୋ—ଫୁଲ ବଉଳବେଣୀ ।
ଭାତ ଛୁଇଁନାହିଁ କାଲିଠାରୁ ପରା,
ଘରେ ମୋ ଧନ ସଙ୍ଗାଳି ଲୋ—ଫୁଃ ବଃ ।୩।

କଳାତୋଳା ଜଗନ୍ନାଥ ଲୋ—ଫୁଲ ବଉଲବେଣୀ ।
ସତେ ଭେଟାଇବେ ଧନକୁ ମୋର ଲୋ,
'ପୂରାଇବେ ମନୋରଥ ଲୋ,—ଫୁଃ ବଃ ।୪।

---

( ୧୪ )

ନବୀନା, ବନ୍ଧୁବିନା ଝୁରି ମଲି ତ । ୦ ।
ଚହଲି ଗୃହଟା ଆସି
ଗୃହିଁଦେଲି ଅଙ୍ଗେ ହସି,
ବନ୍ଧୁ ପରଦେଶୀ ବୋଲି ଟାହି କଲା ତ ।୧।

ମଳୟୁଟା ଥିଲା କାହିଁ
ଅଗଭର ଆସିଥାଇଁ
ଯୋଡ଼ା ପୋଡ଼ା ଅଙ୍ଗି ମୋର ମୁଦିଦେଲା ତ ।୨।

ବାଦ ସାଧି ବଣମଲ୍ଲୀ,
ନାଚଇ ଦେଖ ଦୋହଲି,
ମୁଁ ତାର କି ଦୋଷ କଲି, କହ ଭଲି ତ ।୩।

ଯଉବନ ହେଲା ଭାର
ମେରୁଠୁ ଗରୁ ସମତୁଲ
ଶରତ ଗୃହଣୀ ମିତ, କାଳ ହେଲା ତ ।୪।

---

( ୧୪ )

## ବୋଇତ-ଭସାଣି ଗୀତ

### ( ଅଗ୍ରକଥନ )

ଛପିଯାଇ ପୁଣି ଦେଖାଦିଏ ଯେବେ
ବାଦଲ ଘୋଡ଼ାଅ ଜହ୍ନ,
ଅନୁଭବୀ ଯିଏ, କିଏ ନ ଜାଣିଛି,
ଉଲ୍ଲସି ଉଠଇ ମନ ।
ଦେଢ଼ଶ, ଦୁଇଶ ବରଷ ତଳର
ହଜିଲା ଦିନର କଥା,
ହେଜାଇ ଦେବାକୁ ପରଶିଲି ଏଇ
'ବୋଇତ ଭସାଣି' ଗାଥା :—

* —( ଗୀତ )—

ଏଥର ମାଛି ତୋଲ ଉପରେ ଦେ'ଫଡ଼କା ରସି,
ସାଧବ-ପୁଅ କଲଣି ବଳେ ଗୃହଦାରରେ ଆସି ॥ ୧ ॥
ଫେରନ୍ତୁ ଧର ମିର୍ଦ୍ଧା ଡାକେ,
ଖୋଲ ବୋଟେଇ ସ ହଲେ ଲୋକେ ।

---

* ଦ୍ରଃ—ବହୁ କାଳ ପୂର୍ବେ ଯେତେବେଳେ ଆମ ଜାତିର ସାହସୀ ନାଉରିଆମାନେ, ନିଧୋକାରେ ଗମ୍ଭୀର ଦରିଆକୁ ଠେଲି ବୋଇତ ଭସାଇ ଜାଭା, ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପମାନଙ୍କୁ ଯାଉଥିଲେ, ବଣିଜ କରିବାକୁ—ଏ ଗୀତଟି ସେଇ ଜାହାଜୀ ଲବ୍‌ଜରେ ରଚିତ ।

ଯିବା ପରି ଏ ମଉସୁମୀରେ ଫଲ୍‌ ସାପେଣ୍ଡ ମୁହେଁ
(ଖାଲି) ଢଣ୍ଡ୍ରେଲ ଭୁଣ୍ଡ୍ରେ ଅବଅ ଡାକ ମାଲ୍‌ଦା ଭରି ଗୃହେଁ ।
ପାଗଡ଼ ଗୋଛା, ଅଟାଲ୍ ଓଠା, ମା' ମଙ୍ଗଳା ଘୋଷି,
ଦଅଁ ମାଜଣା ସାରଦେ' ନନା, ସଫର୍ ଛଡ଼େ ବସି । ୧ ।

( ଦରଅ ଗୀର୍, ଲାଗେ ଶିର୍
ଜୋଅନ୍ ଜବ୍‌ବର୍, କାମେଇ ଖବର୍
ଗୀର କରିମଭ୍-ସାହେବ ସଲାମଭ୍ )
ଯାଅ ଗଡ଼ଯା' ଗୋରିପ୍ ଏଇ ସୁଭ ଲଗନେ ଅଜ୍‌,
ସାଧବାଣୀଙ୍କ କହୁଯାଇଛନ୍ତି ନାହାକ ଗଣି ପାଞ୍ଜି ।
ଖାଣ୍ଡିଦେଇଥା' ଖଲାସୀ ଭାଇ, ସଫ୍‌ର ଦବ ରଶି
ବତାଲ୍ ଅଣ୍ଟେ ବାନ୍ଧ ଦେଇଥା' ଯିବଟି କାଳେ ଖସି । ୨ ।

ଦେ' ନାବରି ଦଜଣ୍ଡ଼ ଠାଣି,
କାଷ୍ଟୁ ସାଇନ୍ତ ଥୁଅରେ ଅଣି ।
ଶେଡ଼ ଗୁଡ଼ାଇ, କଳମୀ ଡୋର ଅଡ଼େଇ ରଖ ଭାଇ,
ହେବଅ ଖେଳ ଗୋରିପ୍ ଗଡ଼େ ସମ୍ଭାଳ ମାଝିଭାଇ ।

---

| | |
|---|---|
| ଡୋଲ୍— | ବୋଇତ ଉପର |
| ଫଡ଼କାରଶି - | ପତାକା ଦଣ୍ଡ |
| ଗୃପଦାର— | ଜାହାଜ ଭିତରେ ବସିବାଘର |
| ପେରଣ୍ଡ— | ଜାହାଜର ବାଡ଼ |
| ମିରଢ଼ା— | ଖଲାସି ସର୍ଦ୍ଦାର |
| ଖୋଲ— | ମାଲ୍ ରହିବା ସ୍ଥାନ |

ଦେ’ରେ ଛଣ୍ଡେଲ୍ ସୁକାଣୀ ମୋଡ଼ ନାଳଅ ଢୋଡ଼ ବେଶୀ,
ବେଲ ଛନ୍ଦୁଛୁ ବସ୍ତା ଗୃହାଁ ହୂରବାନ୍ଦ୍‌କୁ କଷି ।୩।

ମୁହାଣ ମୁଣ୍ଡେ ଲଙ୍ଗର ଦବା,
ଭେଗ ମନାସି ହକାର ଯିବା ।

ରାହା ହୁଡ଼ିଲେ ଦରିଅ ମୁହେଁ ଗାମଦ୍ ହେବ ପରା,
ଜଗି ଗଡ଼ାଅ ଗୋରାପ୍ ମାଝି, ମୁଣ୍ଡରେ ତୋ’ର ଭାରା ।
ରାତି ଅନ୍ଧାରେ ଉତ୍ତର ପଟେ ଧୋବ ତାରାକୁ କଷି,
ଶେଷ ରାତିଅ ପୋଥା ତାରାକୁ ଅନାଇଁ ଯା’ ଭାସି ।୪।

ବାହୁଟିଅ କୁନ୍ଦା ମୁଣ୍ଡେ
ଧଣ୍ଡାମାଳ ଲହ୍‌କା ଗୃଣ୍ଡେ ।
ଫଲ୍‌ସାପେଣ୍ଡୁ-ହାଡ଼୍ରୁ ବାହାର୍
ନିକଟେଇଲ୍ଲ ପାଗଡ଼ ଧର୍ ।

---

| | |
|---|---|
| ଫଲ୍‌ସା ପେଣ୍ଡୁ— | ବତୀଘର । |
| ଛଣ୍ଡେଲ୍— | ନାଉରୀ |
| ଅରିଅ— | ଲଙ୍ଗର ଉଠିବା ପରଡାକ |
| ମାଳଦା— | ଖଲାସୀ |
| ପାଗଡ଼— | ବୋଇତରବନ୍ଧା ଦଉଡ଼ି । |
| ଅଟ୍ଟାଲ୍— | ପାଲ୍ |
| ସଫର ଛଡ୍ଡେ— | ବୋଇତର ଏକଅଂଶ । |
| ଗୋରାପ— | ବଡ଼ବୋଇତର ନାମ । |
| ବଡାଲ୍— | ଭଡ଼ି । |
| ଖଡ଼— | ହଂକାରିବା । |

ପଢ଼ଆଣି ଏ ଜୁଆର ବେଳ ଗୁଦରୁ ଡାକେ ମାଝି,
ନଙ୍ଗର କର୍ ମାଆ ମଙ୍ଗଳା, ସମ୍ଭାଳି ଦେଲ୍ୟ ଅଜ୍ଞ ।
ବାହୁଡ଼ାଣିକ୍କ ସୁଭରେ ଗଲେ ଚୂଆ ସୁନ୍ଦର ଘଣ୍ଟ,
ଲୁଆ ଓଖର ସହଣି ଦେବ ସୁକାନ ମୁଣ୍ଡେ ବସି ।୫।

| | | | |
|---|---|---|---|
| ହେଇଁ···ହୋ | ··· | ··· | ଦସ୍ୟଅ ପୀର୍ |
| ହେଇଁ···ଅ | ··· | ··· | ଏଁ ଏଁ ଯ୍ୟା |
| ହା' ବସ | ··· | ··· | ଲ୍ୟଗେ ଶୀର୍ |
| ଯା-ହାବସ୍ | ··· | ··· | ଏଁ ଏଁ ଯ୍ୟା |

---

କଲମିଡ଼ୋର— ଦଉଡ଼ି ।

ହେରଆ— ସାପପର ଗତକରଯିବା,

ବୟା— ଦରିଆ ମଝି-ବାଟର ସାଙ୍କେତିକ ଚିହ୍ନ ।

ନାଳଆ— ସରୁ ଜଳଧାର ( ସମୁଦ୍ରରୁ ବାହାରିଥିବା )

ଗାମଦ— ଜାହାଜ ତଳ କଣାରେ ପାଣି ପଶିବା ।

ଧୋବତାସ— ଧ୍ରୁବତାସ ।

ପୋଅତାସ— ଖିରୂଆ ତାସ ।

ବାହୁଟିଅ ଲୁନ୍ଦା— ବୋଇତ ପଛ ପତାକା ଉଡ଼ିବା ସ୍ତମ୍ଭ ।

ହାଡ଼ୁବାହାର— ହାର୍ ବାର ।

| | | | |
|---|---|---|---|
| ହେଇଁ...ଓ | ... | ... | ପୀର୍ କେରାମତ୍ |
| ହେଇଁ...ହାବସ୍ | ... | ... | ଏଁ ଏଁ ସ୍ତା |
| ହା'ବସ୍ | ... | ... | କୁଆନ ଜବ୍ବର |
| ହା'ବସ୍ | ... | ... | କାମେ ଖବର |

---

( ୧୭ )

ଆମ ଏଇ ଧରମଶାଳା, କୁଣିଆଁ ସଭଏଁ ।୦।

କାହା ମନ କଥା ଜାଣେ କିଏ ?
କାହା କଥା କେ କେଉଁ ମତେ ନିଏ
ଭଲ ଲୋକ ସେ, ତୁମ ଅଖିରେ ଧୂଳି ଯିଏ ଦିଏ । ୧।

କାହା ହାତରେ ଫୁଲ୍ ମୁଣି ଭରା
କିଏ ପୁଣି ଠେଙ୍ଗା ବାଡ଼ି ଧରା ।
ଏ ଦୁନିଆଁ ଭିତରେ ଯେ ଠକେ ବାଏଁ ବାଏଁ ।୨।

—ତା' ଦୁଆରେ ଗଡ଼େ କେତେ ମୁଣ୍ଡ
ସାଇଙ୍କ ଯାକ କରି ପାରେ ଯେ ଗୁଣ୍ଡ ।
ବଡ଼ ପେଟ ତା'ର,-ଯିଏ ତଣ୍ଟି ଚିପି ଖାଏ ।୨।

---

| | |
|---|---|
| ଗୁଦ୍— | ବୋଇତର ଅଶ୍ରୟସ୍ଥଳ । |
| ଖୁଦାମୀ— | ନାଆମଙ୍କ |
| ହାବସ୍— | ଜାହାଜ ଭସାଅ । |
| ଭାଣ୍ଡୁ— | ସନ୍ଧୁଦଣ୍ଡ |

---

ବଡ଼ ବୋଲି ଯାହାକୁ ତୁମେ କହ
ଭିତର ଘର ଖୋଲି ତାର ଚୁହଁ ।
(ଖାଲି) ବଜାର-ଝଡ଼ା ଶଜ ଯେତେ ସାଇତିଛି ସିଏ ।୩।

ଠାବ ନାଇଁ ଏ ସ୍ରଷ୍ଟିରେ ତା'ର
ଖେକ୍ ଠୋକ୍ କାରବାର ଯା'ର
ଭଲ ସେଇ,-ନିଜ ଢୋଲ ନିଜେ ପିଟେ ଯିଏ ।୪।

ତୁମେ ଯିବ ମୁଁ ଯିବି ରେ ଭାଇ,
(ଖାଲି) ଧ'ଦନକୁ ମୁହଁ ଚୁହାଁଚୁହିଁ ।
ବଡ଼ ସାନ ଦେଖାଦେଖି ଯେଉଁ ଦୁଆର ଯାଏ ।୫।

———

( ୧୭ )

ଚହଟ ବଜୁଳି ଚୁହିଁ—ଜାଇଫୁଲ୍,
ଚହଟ ବଜୁଳି ଚୁହିଁ ।
ରାଈ ମନେ ହେଲେ ଅତି ଉଗ୍ରଟ କି, ଜାଇଫୁଲ୍,
କଳା କହ୍ନାଇ ତ ନାହିଁ—ଜାଇଫୁଲ୍ ଲୋ ।୦।

ମୟୂର ନାଚିଲା ବନେ—ଜାଇଫୁଲ୍,
ମୟୂର ନାଚିଲା ବନେ ।
ମୟୂର ଚୂଳିଆ ପଡ଼ିଲା ମନେ କି, ଜାଇଫୁଲ୍,
ଦେଖିଣ କାଲି ସପନେ—ଜାଇଫୁଲ୍ ଲୋ ।୧।

ଭେଙ୍ଗ ଦେଲା ଘୋର ରଡ଼ି—ଜାଇଫୁଲ୍
ଭେଙ୍ଗ ଦେଲା ଘୋର ରଡ଼ି ।
ଏ ବରଷାକାଳ ହେଲା ମୋ କାଳ କି, ଜାଇଫୁଲ୍,
ମାରିଲାଣି ଘଡ଼ଘଡ଼ି—ଜାଇଫୁଲ୍ ଲୋ ।୨।

ଫୁଟିଲା କେଳି କଦମ୍ବ—ଜାଇଫୁଲ୍,
ଫୁଟିଲା କେଳି କଦମ୍ବ ।
କଳା ମେଘ ଘୋଟି ଆସଇ ଅନାଁ,
ଆଜ କି ଧରିବ ଦମ୍ଭ—ଜାଇଫୁଲ୍ ଲୋ ।୩।

———

( ୧୮ )

ରସ, ଦେ' ଝମକାଇ ଲୋ,
ଧାରି ଶିରାବଣ ମାସ,
ଭୂଇଁର ଭିତରେ, ଘାସ ଗହଳରେ
ବାଘ ମାମୁଁ ମୋଡ଼େ ନାଶ ।୦।
ରସ, ଦେ' ଝମକାଇ ଲୋ,
ଫୁଟିଲା ଭୋଦେଇ ଛତୁ,
ଅଖି ପାଣି ମୋର ଅଖିରେ ମଲା,
ଝର ଝରେ ପରବତୁ ।୧।
ରସ, ଦେ' ଝମକାଇ ଲୋ,
ଦହରେ ଖେଳଲେ ମୀନ,
ମନମାରି ସିନା ରହିଲି ସତେ,
ବାପ ଘରେ ଗଲା ଦିନ ।୨।

ରସ, ଦେ' ଝୁମକାଇ ଲେ,
ନଈରେ ବାଳିଆ ମଲା,
ବରଷା କାଳରେ ବିଦେଶ ଗଲା,
(ଧନ) ବାଟ ଚାହିଁ ଦିନ ଗଲା ।୩।

---

( ୧୯ )

ଯମୁନା କଦମ୍ବ ମୂଳେ          ମାଧବୀ ଶାଖାର ତଳେ
କେ ବଜାଏ ବଂଶୀ ଧୀରେ,
ରାଧା ଧାରି ବୋଲି—
ସେ ଚିକ୍‌କଣ କାଳିଆ ।୦।

ଜଳ ଆଣି ଚଳେ ରାଈ,          ସହଚରୀ ସଙ୍ଗେ ନାହିଁ
ଆଖି ଥରେ ଦେଲା ଚାହିଁ
ଏ କାହାର ଛାଇ,
ସେ ଚିକ୍‌କଣ କାଳିଆ ।୧।

ବାଟ ଭାଙ୍ଗି ଜଳେ ପଶେ,          କେହି ନାହିଁ ଆଶେପାଶେ,
କଳସୀ ସୁଅରେ ଭାସେ—
ରଙ୍ଗ ଦେଖି ହସେ,
ସେ ଚିକ୍‌କଣ କାଳିଆ ।୨।

ଚମକି ଚତୁର୍ଦ୍ଦିଗ ଖୁଧା,　　　　ଗୃହରେ ଲାଗିଲା ବାଧା
ପଡ଼ିଲା କା ପଥେ ବାଧା—
ଗୃହେଁ ଅଧା ଅଧା,
ସେ ଚକ୍‌କଣି କାଳିଆ ।୩।

———

( ୨୦ )

ରବି ଛୁଇଁଲା ଆସି କାନ୍ତି ଚଳକି,
ହସ କାନ୍ଦକୁ ଦେଇ ଗୋଳି କି ।୦।

ଜଳିବାକୁ ନାହିଁ ବାହାଘରେ ସଞ୍ଜ ସଳିତା,
ଖାଇବାକୁ ମିଳୁନାହିଁ ଖୁଦ୍ର, ପେଜ, ପଳିତା
ଜୁଆଁସ କାହାଘରେ,　　　　ଅଖିରୁ ଲୁହ ଝରେ
ଛୁଆ ମୁହଁରୁ କାଟି,　　　　ମାଆ ତା' ପେଟ ପାଳେ
ହସି କେ ପାରୁଛି ଢଆଳକି ।୧।

ପାଟ ପୀତାମ୍ବରୀ କିଏ ପିନ୍ଧୁଛି ଅସୁମାର,
ଗଇଁଠା କବଠା ଖଣ୍ଡି ପେଡ଼ି ଲୁଗା କାହାର,
ମୁଣ୍ଡ ଝାଳ ତୁଣ୍ଡରେ—　　　　ମାର କେ ଦନ ସାରେ
ଘଡ଼େ ଜଣେ କେ ବସି　　　　କିଏ ସେ ଘର କରେ ।
ଦୁନିଆଁରେ ଲାଗିଛି ଭେଳିକି ।୨।

———

( ୨୧ )

ପୁରୁଷ— ବରଷି ପହିଲ ପାଣି,
ରଜ ସଜବାଜ ଭାଙ୍ଗି ଦେଲାଣି,
ଭାଙ୍ଗି ଦେଲାଣି ଲୋ, ମନ ମଉଳି ଗଲାଣି ।୧।

ସ୍ତ୍ରୀ— ଭାଙ୍ଗିଲା ମହତା ପାନ,
ଭଉଜକୁ ଦେବି ମୁଁ, ହେଲା ମୋ ମନ,
ହେଲା ମୋ ମନ ଲୋ, ସବୁ ହିନା ଅକାରଣ ।୨।

ପୁରୁଷ— ହେଇଥିଲା କେତେ ସଜ,
ଭାଙ୍ଗିଗଲା ସଙ୍ଗାତ, ଦୋଳି ମଉଜ,
ଦୋଳି ମଉଜ ଲୋ, ଅସନ୍ତା ରଜକୁ ହେବ ।୩।

ସ୍ତ୍ରୀ— ମୁଢ଼ି ପୋଡ଼ପିଠା ଥାଉ,
ସାଇ ସାଇ ବଣ୍ଟା ନହେଲା ଆଉ,
ନ ହେଲା ଅଉ ଲୋ, ରହ ମେଘ ଘୁଞ୍ଚି ଯାଉ ।୪।

ପୁରୁଷ— ଘେନିଲି ଫୋପି ଚନ୍ଦନ,
ନାଇଲି ଅଳତା ମୁଁ କରି ଯତନ,
କରି ଯତନ ଲୋ, ମେଘ କଲା ଗରଜନ ।୫।

ସ୍ତ୍ରୀ— ଗହଲ ଅମ୍ବର ଘୁଇ,
ଝୁରି ହେଲେ ସଙ୍ଗାତ ଆଉ କା ପାଇ,
ଆଉ କା ପାଇ ଲୋ, ଆର ବରଷକୁ ଯାଇ ।୬।

ପୁରୁଷ— ଡାହୁକ ଦେଲାଣି ଡାକ,
ରଜବେଳ ଗୁହାଁ ସେ କରନ୍ତୁ ଲାଖ ।
କରନ୍ତୁ ଲାଖ ଲୋ, ମନ୍ଥ, ଏଡ଼େ ଅବିବେକ ।୭।

( ୨୨ )

ଚମ୍ପାଗୋରୀ ଲୋ, ଚମ୍ପାଗୋରୀ !
ନାଚ ଚେତ ଚେତ-କଳା ପୀରତ
ଚମ୍ପା ଗୋରୀ ଲୋ, ଲୋଡ଼ି ମରୁଥାଇ ଝୁରି ଲୋ ।୧।

ବରଜ କାଳିଆ କାହ୍ନୁ
ରାଧା ଗୋରି ତାକୁ ଭେଟିବା ଦନୁ
ଚମ୍ପାଗୋରୀ ଲୋ, ଘର ମୁରୁଛନ୍ତି ଝୁରି ।୨।

କାଳିଆ ଭଅଁର ଗ୍ରେର
ସବୁ ଫୁଲ ଚୁମ୍ବି ନୁହେଁ କାହାର,
ଚମ୍ପାଗୋରୀ ଲୋ, ମଧୁ ପିଉଥାଏ ବୁଲି ।୩।

କାଳିଆ ମେଘକୁ ଅନା,
ବିଜୁଳି ଚହଟେ ଘଡ଼ିଏ ସିନା,
ଚମ୍ପାଗୋରୀ ଲୋ, ରଖଇ ପଣତ ଧୋଉ ଲୋ ।୪।

କାଳିଆ ଭଜନପାତ୍ର,
ତୋ'ବାଟ ଅନାଇଁ ଝୁରେ ଭା ଗ୍ଲନ୍ତ,
ଚମ୍ପାଗୋରୀ ଲୋ, ଭେଟିବୁ ସତେ ଚତୁରୀ ଲୋ ।୫।

ଭଲାରେ ନ ରସ ମିତ,
ଶୁଣିବୁ ତ ନେଲ ଗୋପୀ ମହତ,
ଚମ୍ପାଗୋରୀ ଲୋ, ପଳାଇ ମଥୁରାପୁରୀ ।୬।

———

( ୨୩ )

ଚଇତାଳି ବାଆ ତ, ଉହ୍ଲାଏ ହିଆ ଗୋ—
ମୁଁ ଚେଉ ଅନାଏଁ ଫେର ଫେର, ସଖିରେ
ମନେ ଅଛୁ ଲାଖିରେ,
ଭେଟ ଅଖି ଅଖିରେ ।୦।

ସେଦନ ତ ଏଇ ସଞ୍ଜ—କୁଞ୍ଜଭରା ଫୁଲ ସଜରେ···
ଢୁଲି ଅସୁ ଫୁଲ ଲାଜ ରେ,
ଡର ନ ଯାଇ ପାଣିଘାଟେ, ସଙ୍ଗ ରେ
ପାଦ ଗଲା ଲାଖି ରେ,—ଢୋଇଲଥା ସାକ୍ଷୀରେ,
ତରଛେ ପଡ଼ିଲା ଖସି ଲେଖ ଶାଢ଼ୀ ପଣତ ଟିକି ।୧।

କଳସୀ ତ ଉଳିଗଲା, ବଇଁଶୀ ହୁରୁ ଡାକିଲା ରେ
ତରଛେ ପଡ଼ିଲି ଚମକି,
ନିଗୁଟିଆ ସେ ବଣ ବାଟ, ସଖି ରେ
ଦେଲି ଅଖି ଜାକି ରେ—ମଲି ବୋଲି ଡାକି ରେ ।୨।

— — —

( ୨୪ )

କଳାମେଘ ରଜା ରେ,
ବଜାଇ ଚଡ଼କ ବାଜା.ସଜାଇ ବିଜୁଳି ଧ୍ୱଜା,
ବଗଧାଡ଼ି କଣ୍ଠେ ଝୁଲେ କେଡ଼େ ମଜାରେ,
ମୁକୁଟ ସାଜେ ସଜା କଦମ୍ବ ଫୁଲ ହଜାରେ । ୦

ଫୁଟିଲା କିଆ ସତେ—ହେମ ଗୋସ୍ୱ ସାଇ କସେ,
କଳଜ କଳାକାନ୍ତ—ତନୁ ଛୁଇ ପରା ଦଶେ,
ବନ୍ଧୁଆ ଦିନେ ତାର—ଧାର ଅକ୍ଷି ନୀର ଖସେ,
କାହିଁ ତୁ ସଞ୍ଚିଥିଲୁ—ଗନ୍ତାଘରେ ବଉଦ ଭରେ,
ଧରାରେ ବାଣ୍ଟିଦେଲୁ—ସ୍ୱୀସଫୁଲ୍ କି ଆଦରେ । ୯ ।

---

( ୨୫ )

ନିଶି ଶେଷେରେ—ସଖି, ଦେଖିଲି ସପନେ
ଥିଲେ ମୋପୁରେ ନାଗର, ।୦।

ହସି ଆସି ପାଶେ ବସି—କହୁ କଥା ରସି ରସି
ଗେଲେ ଗେଲେ ଗୋ—
ସଖି ! ଧଇଲେ ମୋ କର,
ତନୁ ଥରିଗଲା ମୋର ।୧।

ଏକେ ଯଉବନ ଭାର—ଦୁଜେ କୁସୁମର ହାର
ତହିଁପର ଗୋ—
ବନ୍ଧୁ ଛୁଇଁ ଅଙ୍ଗମୋର,
କଲେ ପ୍ରେମ କାରବାର । ୨ ।

ଅଢେ଼ ଅଢେ଼ ଚୁହିଁଦେଲି—ସଖିରେ ମୁଁ ଲାଜେ ମଲି
ନଇଁଗଲା ଗୋ—
ମଥା, ମାନିଲି ମୁଁ ହାର,
ଦେହ ଛୁଉଁଛି ତୋହର । ୩ ।

ଧୂଷ୍ଟ ଢଳଳପାଣ୍ଡଅ—ଭରଣ୍ଡା ଦେଲ୍ ମୋ ହୃଅ
କାହିଁଥିଲ ଗୋ—
ଯେନ ଅସିଲ ସକାଳ,
ଲୁଚଗଲେ ମନ ଚୋର ।୪।

ଦହୁ ହୁଏ ମନ ସହୁ ।—ମୋ ସଷ୍ଟ କେ’ ଦୁଃଖୀ ନାହିଁ
କେତେ ସତେ ଗୋ—
ଆଉ ସହିବ ଏଥର,
ଝରେ ନୀର ଧାରଧାର ।୦।

———

( ୨୭ )

ସପନେ ମିଳନ ଅଖି ସେଇ ମୋ ମରମ ସାକ୍ଷୀ
.ନିରମାଖି ମୁଁ ରେ ସଖି, ଝୁରେ,
.ନିଶିଦନ ଏ ନୟନ- ନୀର ଝରେ ଅନୁଦନ ଗୋ,
ଘନଘନ ଛନଛନ ମନ ଲଜେ ମରେ,
ମନ ଘାରେ, ମୋ ମନ ଘାରେ,
ଦଗାଦଅ ରହିଲ ତ ଦୂରେ ।୧।

ବରଷା ଅସିଲ ଘୋର ଭରସା ତୁଟିଲ ମୋର
ଅଖି ଠାରେ ଗୋ, ଆଖି ଠାରେ,
ମାରିଲ ଚକୁଳ ଥରେ ଥରେ ଡରମରେଁ ମୁଁ ଗୁଣ୍ଡ ଥରେ
( ମୋର ) ମନଚୋର ନାହିଁ ତ ପାଶରେ।୨।

ଫଗୁଅ ଫଗୁଣମାସେ ପରଦେଶୀ ବାଆ ଅସେ
ଫୁଲବାସେ ଗୋ, ଫୁଲବାସେ,
କୋଇଲିଟା ଥାଇ ଡାଳକରେ,
ସାଥୀନାହିଁ କହିବ ମୁଁ କାହାରେ ।୩।

ଶୀତ ଆସି ଦେଖାଦେଲା ରାତି, ସାତ ରାତି ହେଲା
ଜୀବନେଲା, ମୋ ଜୀବ ନେଲା ।
ନିଦ ନାହିଁ ପୋଡ଼ା ନୟନରେ,- ନୀର ଝରେ ଗୋ ନୀର ଝରେ
ରହିରହି ସାରେ ରାତି ସାରେ ।୪।

ଦିନଗଲା ରାତିଗଲା ମାସ ବିତି ଯୁଗ ଗଲା
ମନମଲା ଗୋ, ମନମଲା,
ଅଭାଗିନୀ ଆଉ ଏ ସଂସାରେ,—ମୋ ପର ରେ କେ ମୋ ପର ରେ
ଏକାକିନୀ ଝୁରି ଝୁରି ମରେ ।୫।

———

( ୧୭ )

ଲୁଙ୍କୁଅ ନୟନ ଠାରି
ରହିଗଲା ଫେରି ଫେରି ସେ ।୦।

ଦଣ୍ଡେ ବଣବାର ଯା'ରେ ନ ହେରିଲେ
ଝରଇ ନୟନୁ ଶତଧାର,
ସେ ସତେ କି ମନେ ଗଲା ଅଭିମାନେ
କହ ରେ ସଜନି, ମରେ ଝୁରି ।୧।

ଭ୍ରୂଲୁ କମାଣରେ          କଟା ଶର ଥିଲ ସେ
ଦହିଲ ମରମ ବାରବାର,
ମନକଥା ଭାର          ମନେମାର ଗୋପି
ଚେତନାକୁ ମୋର ନେଲ ହରି ।୨।

ଦେଖାହେଲେ ଥରେ          ନୟନ ପଥରେ
କହିବ ନଜର ସାତପର,
ଗଲେ ଜୀବ ଯିବ          କଥା ତ ରହିବ,
ତା ଲାଗି ଜୀବନ ଦେବି ହାରି ।୩।

---

( ୨୮ )

ଯାଇ ଯମୁନାକୁ          ନୀର ଅଣିବାକୁ
ବାଟେ ଭେଟିଲି ବନମାଳିଆ,
ନବଘନ କାଳିଆ— ।୦।

ଗୃହାଣୀ ଛଟକେ          ମୋ ମନ ଅଟକେ
ଅଷିଠାରେ ବାଙ୍କ ଚୂଳିଆ,
ଗୁଆଲି ମହତ          ସାରଦେଲ ସେ ତ
ଘାଟ ଜଗି ସେ ନୀପ ମୂଳିଆ,
ନବଘନ କାଳିଆ— ।୧।

ବଇଁଶୀ ସୁରେ ତାର          ଛନକ ଉଠେ ମନଟା ମୋର
ମୋ ନାଆଁ ଧରି ଡାକେ          କୁଞ୍ଜବନେ ଥରକୁ ଥର,

ଜାଣେଇ ମୋ ନଣନ୍ଦ          ସହଜେ ସେ ତ ମନ୍ଦ
ଅତି ଉତ୍କଣ୍ଠହେଲା, ସେ ବରଜ ଧୂଳିଅ,
ନବଘନ କାଳିଆ । ।୨।

---

( ୨୯ )

ବଉଳ ମାଇଲା ଘନେ, ଯାଇଫୁଲ
ବଉଳ ମାଇଲା ଘନେ,
ଏକାଳରେ ଧନ ବିଦେଶ ଗଲା,
(ସତେ) ପଡ଼ୁଥିବି କି ମୁଁ ମନେ, ଯାଇଫୁଲ ଲୋ ।୧।

ଉଡ଼ିଯାଏ ବଗଧାଡ଼ି, ଯାଇଫୁଲ
ଉଡ଼ିଯାଏ ବଗଧାଡ଼ି,
ଉଠାଇ ଜହ୍ନିବ ମୋଧନ କାଳେ
(ସେଡ) ଶୋଇଥିବ ମୁହିଁ ମାଡ଼ି, ଯାଇଫୁଲ ଲୋ ।୨।

ଜଳାକବାଟି ମେଲିଲି, ଯାଇଫୁଲ
ଜଳାକବାଟି ମେଲିଲି,
ଚହଟ ବଉଳ ଖେଳିବା ଗୁହିଁ,
(ତାର) ମନେ ପଡ଼ୁଥିବ ମୁହିଁ, ଯାଇଫୁଲ ଲୋ ।୩।

ପାଚିଲା ନାହାକବେଲ, ଯାଇଫୁଲ
ପାଚିଲା ନାହାଲବେଲ,
ମନା ନମାନିଲା ଧନ ତ ମୋର,
(ତାକୁ) ମୋ' ମଲା ନାୟିମ ଦେଲା, ଯାଇଫୁଲ ଲୋ ।୪।

ସୁଭରେ ଆସିବେ ଫେର, ଯାଇଫୁଲ
ସୁଭରେ ଆସିବେ ଫେରି,
ପୂରାଇବେ ମନ କି ନା ମୋହରି,
ସତେ କି ହରଗଉରୀ, ଯାଇଫୁଲ ଲୋ ।୫।

---

( ୩୦ )

ଅରେ······

ଉଠାଇଲା ମେଘ କଳାହାଣ୍ଡିଆ ରେ,
ବରଷିଲା ଅଣୁଅଣି,
ଡୁବ ହେଲା ଦାଣ୍ଡ, ସାଣ୍ଡ ଛତା ତଳେ
ଡାକଦେଲା ବେଙ୍ଗରାଣୀ,
ବେଳେ ହଳକୁ ଦଅ ମେଲଣି ହୋ ।୧।

ଅରେ······

ବୁଆଣ୍ଡ ଗଛରେ ବଉଳ ଧଇଲା
କେଷ୍ଟୁର ମାଇଲା ଗଜା,
ଭୋଜ ପରବରେ ବହୁଲେ ରଜା ହୋ,
ଖାଇବେ ଖୁସିରେ ଖଜା
( ହୋ—ବୋଇଲା )
ବସି, ମାରଲେ ବରଷା ମଜା ।୨।

---

( ୩୮ )

ଉଡ଼ିଗଲା ଗେଣ୍ଡ୍ରାଳିଆ ଝାଡ଼ିଦେଲା ପର—
ମାୟା ମୃଗ ପଛେ ଗୋଡ଼ାଇଲେ ସୀତାବର
ହେ ବୋଇଲା—ସେ ତ ବଧତାର ଖେଳଘର ।
ଏତେ ପଣ୍ଡିତ ହୋଇ          ସୁନାର ମୃଗ କାହିଁ
ନଥିବା ନକଲେ ବିଚାର ହୋ ।
ଝମ ଝମ ବରଷା          ଉଡ଼ିଯାଉଛି ହଂସା
କୁଡ଼ିଆ ତଳେ ଠାକୁରାଣୀ
ଜଗିଥିଲେ ଲକ୍ଷ୍ମଣ          ଶୁଣିଲେ ଡେରି କାନ
'ଲକ୍ଷ୍ମଣ ରଖ' ବୋଲି ବାଣୀ
ହୋ ବୋଇଲା
ଯାଅ ହୋଇ ତ୍ୱରିତ          ମୋ ପତି ଡାକ ଏ ତ
ଅକୁଳେ ଠାକୁରାଣୀ ଭଣି ହୋ ।

———

( ୩୯ )

ବୁଅନ୍ତୁ ଗଛରେ ଗୁଛ ଦେଲା ନୂଆ ପେନ୍ଥାକୁ ପେନ୍ଥା ବଉଳ,
ନହୁଲି ବୟସୀ ସରାଗେ ଖୋଷିଲା ଖୋଷାରେ କଦମ୍ବ ଫୁଲ ।
ଶାଗୁଆ ଶାଢ଼ିକି ପିନ୍ଧି ହସୁଥିଲା ଲତା,—ନବଯଉବନୀ,
ଫୁଟିଲା ମାଳତୀ ଘୋଡ଼ାଇ ତା ମଥା ଅବୁର ସାଇତିଲାଣି ।
ତନୁ ସାରି ତାର ମହକେ ଅତର ନାଗର ଉଆଁର ଲାଗି
ଅଶା ପଥ ଚାହିଁ ବିତାଇଲା କେତେ ଜାଗର ଯାମିନୀ ଜାଗି ।

ଡାହୁକ-ରଡ଼ିକୁ ବଳାଇଦେବାକୁ ମୟୂର ଉଠିଲା ଡାକି ।
କଳା ଘନକୋଳେ ଦେଖେ କୋଟି କୋଟି ଚନ୍ଦ୍ର-ଖଞ୍ଜା ପୁଚ୍ଛ ଟେକି ।
ପଥର ଖୋଲରୁ ଗେରୁ ଲୁଗା ପିନ୍ଧି ଝରଣା ବାହାର ହେଲା,
କୁତୁକୁତୁ ଗୀତ ଗାଇ ମନସୁଖେ ତଳ ବନେ ଦେଖାଦେଲା ।
ଗାଆଁ କୁଆଁରୀଏ ତୋଳିଗଲେ ବନୁଁ ଠୋକେଇକୁଣ୍ଡେଇ ଫୁଲ
ପହିଲି ବରଷା ପାଇ ଗଜୁରୁଚି ଶୁଖିଲା ଦୂବର ମୂଳ ।
ଫୁଲ ତୋଳୁ ତୋଳୁ ନହୁଲୀ ବୟସୀ ଗାଏ ଜାଈଫୁଲ ଗୀତ
ମୁଣ୍ଡିଆ ଖୋଳରେ ଲୁଚି ସତେ କିଏ ଗୀତ ପାଳି ଧରୁଛି ତ ।

---

( ୩୩ )

ଟୋପି ମେଘ ବରଷିଲା, ଜାଈଫୁଲ
ଠୋପି ମେଘ ବରଷିଲା,
ଏବେଳେ ମୋ ଧନ ବିଦେଶ ଗଲା
(ମୋ) ମନ-କଥା ମନେ ମଲା, ଜାଈଫୁଲ ଲୋ ।
ବିଜୁଳି ମାରିଲା ଘନେ, ଜାଈଫୁଲ
ବିଜୁଳି ମାରିଲା ଘନେ,
ଘଡଘଡ଼ି ରଡ଼ି ଶୁଭିଲେ କାନେ
(ମୁଁ) ଝାମ ଯାଏ କ୍ଷଣେକ୍ଷଣେ ଜାଈଫୁଲ ଲୋ ।
କଣ୍ଠ ତ ଗଲାଣି ବଳି, ଜାଈଫୁଲ
କଣ୍ଠ ତ ଗଲାଣି ବଳି,
କେଉଁ ନାଗ ଅବା ରଖିଲା ଛଳି,
(ମୁଁ) ନ ହେଲି କି ମନ ଭଳି, ଜାଈଫୁଲ ଲୋ !

ବଗଧାଡ଼ି ଉଡ଼ିଗଲେ, ଜାଈଫୁଲ
ବଗଧାଡ଼ି ଉଡ଼ିଗଲେ,
ପକ୍ଷରେଁ ମୋ ଧନ ସନ୍ଦେଶ ଭଲେ
କହିବାକୁ ଥରେ ହେଲେ, ଜାଈଫୁଲ ଲୋ ।

ହସି ହସି ଗଲେ କହି, ଜାଈଫୁଲ
ହସି ହସି ଗଲେ କହି,
ଗୃହମୁହିଁ ମୋର ଛୁଇଁବୁ ନାହିଁ
(ମୁଁ) ଅସିବି ବରଷା ଥାଇ, ଜାଈଫୁଲ ଲୋ ।

ଫୁଟିଲା ବଣନଅଳି, ଜାଈଫୁଲ
ଫୁଟିଲା ବଣନଅଳି,
ହାତଗଣ୍ଠି ଧରି କଲି ମୁଁ ଅଳି
ନ ଯାଅ ବିଦେଶ ବୋଲି, ଜାଈଫୁଲ ଲୋ ।

ଦେହ ମୁଁ ଛୁଅଁଇ ଥିଲି, ଜାଈଫୁଲ
ଦେହ ମୁଁ ଛୁଅଁଇଥିଲି
ଅଜାଣତେ ହୁଏଁବା କି ଦୋଷ କଲି
(ତା) ମନରୁ ପାସୋରି ଗଲି, ଜାଈଫୁଲ ଲୋ ।

———

( ୩୪ )

ମନବାଉଳା ରେ—ସରଲାଣି ଧାନମଳା
ଦହଡ଼ ଭୁଇଁରେ, ମନ ମଉଜରେ, ଏଥର ପଇତ ଟଗାଲା ।୦।

ଖରା ଢାକରକୁ ପିଠି ପତାଇ ତୁ
ଚାଷ କଲୁ ଅଣ୍ଟୁ ଅଣି,
ଗଛା ଭଲ ହେଲା, ଫୁଲ ଉଡ଼ାଇଲା
ସରଲା ତ ବାହୁଡ଼ାଣି ।
ହେଲକାଳ ହେଲା—କଲେଇ ଗଦାରେ
ପୂରିଗଲା ଧାନ ଖଳା । ୧ ।

(ଅରେ) ଏଇ ଧାନଖଳା କାଲ କାଲ ଅଛୁ
ଗଲେ ଲାଖେ ଲାଖେ ଚାଷୀ,
ଅଗାଡ଼ ଉଡ଼ିଲା, ଧାନ ଗଦା ହେଲା,
ମେଢ଼ି-ଖୁଣ୍ଟ ଅଛୁ ବସି ।
ଆଜ ଧାନ ଗଦା—କାଲିକି ନ ଥିବ
(ସବୁ) ଉଡ଼େଇ ଦନର ଖେଳା । ୨ ।

---

( ୩୫ )

ଆଖିରେ ପଇଲା ବାଲି,
ଫୁଲସଞ୍ଜକୁ ତ କଣ୍ଟ ଦେଇଥିଲୁ
ନଇକୁଲେ ଗୃହିଁ ମଲି ।୦।

ମିଛଟାରେ ଖାଇଁପାଇଁ,
ଯାହାପାଇଁ ଧନ ଜନକ ଜନକ,
ତା'ମନ ଉଡ଼ୁଛି କାହିଁ । ୧ ।

ବୁଣୁଚ ଉଷୁଆଁ ଧାନ,
ଠାକୁର ଗାଳର ବହପ ଦେଖ ତ
ଆକାଶ-ଗୃହକୁ ମନ । ୨ ।

ଜଷ୍ଟୁନା ଗୃହଲ ଗଜା,
ନାଗରକୁ ଗୃହି କେତେ ଖୋଜୁଛୁ ଲୋ,
ମନେ ମନେ ଖୁସି ଖଜା । ୩ ।

ଛୁଆଲେ, ଖୋଦେଇ ଛତୁ,
ମେଘ ଦେଖାନାହିଁ, ଗରଜନ ନାହିଁ
ତୁଣ୍ଡରେ କାହିଁକି ମାତୁ । ୪ ।

———

( ୩୭ )

କହୁଛି କଥାଏ ହେତୁ କର ଭାଇ,
ଆଜ କଥା କାଲ୍ ନାହିଁ ।
ମିଛେ ବାହାଫୋଟ ମାରୁହେଉଛୁ ତ
(ଖାଲି) ବାପ ଅଜା ଗୁଣ ଗାଇ ରେ,
ମନୁ ପାସୋରପକା,
(ଥିଲେ) ନଜର ବଡ଼ମା ଦେଖା ରେ
ମନୁ ପାସୋରପକା । ୧ ।

ଅମ ବାପ ଅଜା ନାଆଁ ବଢିଗଲେ
କୋଣାର୍କ ଢୋଲ ଦେଇ,
ସେଇ ନାଆଁ ଗାଇ ଗ୍ଲଣ୍ଡଙ୍କ ଫୁଲାଇ
ନାଚୁଅଛୁ ସିନା ଥେଇ ଥେଇ ରେ,
କଣ୍ଠ କରିଚୁ କାସ,
କାହାବଳେ ଫୁଲାଇବୁ କଣ ରେ ।
ରୁଦ୍ଧ କରିଚୁ କାସ ।୨।

ତୋ ପୁଅ ତୋ ନାତି କି ଗୁଣ ଗାଇବେ
ପାଠରେ ଅବା ଶାଠରେ,
ବଣିକ ବେଉସା କାହିଁରେ ବଢ଼ିଚୁ
(ଖାଲି) କଥାରେ ହେବ କି ମୋଟ ରେ,
ଆଗ ଦିନକୁ ଭାବ
ନାତି କି ଗୁଣ ବସି ଗାଇବ ରେ
ଆଗ ଦିନକୁ ଭାବ ।୩।

ପଢ଼ିଲେ, ଶୁଣିଲେ, ଶିଖିଲେ, ଦେଖିଲେ
ବଡ଼ ସିନା ଦିନେ ହେବ ।
ଅଜ୍ଞାନ ଅନ୍ଧାରେ ଘର ଅଣ୍ଡାଳିଲେ
ମିଳିବା ଧନ ହଜିବ ରେ
ଆରେ ଘରକୁ ଗଢ଼
(ସେ ତ) ସହର ଢୋଠାର ବାଡ଼ ରେ
ଆରେ ଘରକୁ ଗଢ଼ ।୪।

———

ଚହ୍ଳଟ ଗୃହଣୀ ରେଖାଇ ଦଏ ଲୋ,
ଗୃହୁ ଗୃହଗୋଷ୍ଠି ମୋର,
ଚଳୁଷ୍ଠି ଛଇଲା ଗୃହିଁ ଝୁରୁଥିବ
ରେଖା ଥିବ କି ଜୀବନେ ତାର ଲୋ,
ସେ ମୋ ଚମ୍ପା ଗଉଷ୍ଠି,
ତା'ର ମୁକୁଳା ଥିବ ଚଇଁଷ୍ଠି ଲୋ ସେ ମୋ ଚମ୍ପାଗଉଷ୍ଠି । ୧ ।

ଚୈତ୍ର ବସନ୍ତରେ ତମଙ୍କା ପଡ଼ି ସେ
ଶନ୍ତାରେ ଯିବଣି ସଢ଼ି,
ଚଢ଼ଇ ମଥାରେ ପଡ଼ୁଥିବ ତାର,
ଭୂଇଁ ଶଢୁଥିବ ଘଡ଼ଘଡ଼ି ଲୋ,
ସେ ମୋ ସୁନାଖଡ଼ିକା,
ରସକଲି ପଡ଼ିଥିବ ଫିକା ଲୋ···ସେ ମୋ ସୁନାଝଡ଼ିକା ।୨।

ଗୋଠା ଜହ୍ନ ଦେଖି ମନେ ହୋଇ ଦୁଃଖୀ
ମନାସୁଥିବ ସହଣି
ସତେ କି ଠାକୁର ଗୁହାରି ଶୁଣିବେ
(ଲକ୍ଷେ) ଚମ୍ପା ଚଢ଼ାଇବି ଗଣି ଲୋ
ଗୃହୁ ଲବଙ୍ଗଲତା,
ଲୁହ ଛଳଛଳ ଆଖିପତା ଲୋ···ଗୃହୁ ଲବଙ୍ଗଲତା ।୩।

ପୁରୁଷ— ଡାଳରେ ବାନ୍ଧିଲି ଦୋଳି,
ଆସ ତୋର ମୋର ଲୋ ବସିବା ମିତ,
ବସିବା ମିତ ଲୋ,
ରଜଦୋଳି ଖେଳି ଖେଳି ॥ ୧ ॥

ସ୍ତ୍ରୀ— କଳାମେଘ ଗରଜିଲା,
ତୁ ତ ପରଦେଶୀରେ, କାହୁଁ ଆଇଲୁ
କାହୁଁ ଆଇଲୁ ଲୋ,
ମିତ ବସିବା ନୋହିଲା । ୨ ।

ପୁ— ହରବନ୍ଧୁ ଭଲ ସିନା,
ଆଖିକି ସୁନ୍ଦର ଲୋ ନଈ ସେପାରି,
ନଈ ସେପାରି ଲୋ,
ଦୂର ପରବତେ ଅନା । ୩ ।

ସ୍ତ୍ରୀ— ଅକାଳ କୁଣିଆ ତୁହ,
ଦ'ଦନକୁ ବାନ୍ଧୁଚୁ କେତେ ସୁଆଗ,
କେତେ ସୁଆଗ ରେ,
ମନକୁ ତ ପାଉନାହିଁ । ୪ ।

ପୁ— ନିତି ଦେଖା ନୁହେ ଭଲ,
ଅକାଳେ ସକାଳେ ହୋଇଲେ ଭେଟ,
ହୋଇଲେ ଭେଟ ଲୋ
କେତେ ଲାଗିଥିବ ଗେଲ । ୫ ।

ସ୍ତ୍ରୀ—　　　ଶୁଖିଲା ବର ପତର,
ଥିଲା ନଥିଲାକୁ ରେ ଥିବ ବେଭାର,
ଥିବ ବେଭାର ରେ
ମନକୁ ମନ ବଗୁର । ୬ ।

———

( ୩୯ )

ପୁରୁଷ—　　ବାସିଲା, ପାଚିଲା ଧାନ,
ରଙ୍ଗଡ଼ ଶାଢ଼ୀକି କରୁଛୁ ମନ,
ରହ, କିଣିଦେବି ତୋତେ ଧନ ଲୋ, କଳା କାଇଁଅମାଳ,
ତୋତେ ମନକଥା କହିଦେଲି ତ । ୧ ।

ସ୍ତ୍ରୀ—　　　ରହେଁ ଚିକ୍‌କଣ କଥା
ଭଲ୍ କହି ଜାଣୁ ଅରେ ନାଲ୍‌ଠା,
ଅସି ସରିଲା ତ ଧାନକଟା ରେ, କଳା କାଇଁଅମାଳ,
ତୋତେ ମନକଥା କହିଦେଲି ତ । ୨ ।

ପୁ—　　　ସାଢୀ କଲି ମାହାପୁରୁ,
କୁମ୍ଭଶାଢ଼ୀ ଆଣିଦେବି ହାଟରୁ,
ଧନ, ମନଟି କାହିଁକି ମାରୁ ଲୋ, କଳା କାଇଁଅମାଳ,
ତୋତେ ମନକଥା କହିଦେଲି । ୩ ।

ସ୍ତ୍ରୀ—　　　କେତେ ତ ଦେଇଛୁ କଣ୍ଟି,
ଅଣିଦେବୁ ବୋଲି ରଙ୍ଗଣୀ ପାଟ,
ମୁଁ ତ ଜାଣିଛି ତୁ ବଡ଼ ଖଣ୍ଟ ରେ, କାଳା କାଇଁଅମାଳ,
ତୋତେ ମନକଥା କହିଦେଲି । ୪ ।

ପୁ—  ଲୁଷି ନ ଯା' ଗୁଡମୁହିଁ,
ଏଥର ନିୟମ କରୁଛୁ ମୁହିଁ,
ତୋ ଭାଳପଣତ ଲୁଇଁ ଲୋ—କଳା କାଇଅଁମାଳ
ତୋତେ ମନକଥା କହିଦେଲି ତ । ୫ ।

ସ୍ତ୍ରୀ—  କହୁଛୁ ତୋ ସଣ ଖାଇ,
ଏଇଥର ଯେବେ ଠକିବୁ ତୁହି,
ଆଉ ମୁହିଁ ଗୁହାଁଗୁହି ନାହିଁ ରେ, କଳା କାଇଁଅମାଳ
ତୋତେ ମନକଥା କହିଦେଲି ତ । ୬ ।

———

( ୪୦ )

ପୁରୁଷ—  ଢୋଲରେ ଗାଇଲି ଗୀତ
ଦେଖାଇ ଆଣିବ ଲୋ ଗୁଲ ସଙ୍ଗାତ,
ଗୁଲ ସଙ୍ଗାତ ଲୋ
ବରୁଣାଇଁ ରଜଯାତ । ୧ ।

ସ୍ତ୍ରୀ—  ଭଣ୍ଡାଇ କହୁଛୁ ମୋତେ,
ରଜଯାତ ଅମେ ହୋ ଦେଖିଛୁଁ କେତେ,
ଦେଖିଛୁଁ କେତେ ହୋ
ରଥଯାତ ପରଯନ୍ତେ ।୨।

ପୁ—  ବାଳିଆ ମାଛର କଣ୍ଟା,
କିଣିଦେବ ତୋତେ ଲୋ ଝସରମଠା,
ଝସରମଠା ଲୋ
ଭାଙ୍ଗି ଗୁଲିଥିବୁ ଅଣ୍ଟା ।୩।

ସ୍ତ୍ରୀ— ବୁଅଙ୍କୁ ଧଇଲୁ ଲେଣ୍ଡ୍ରା,
ମଠାଶାଢ଼ୀ ଘୁର ହୋ ପଗୃରେ କାଏ,
ପଗୃରେ କାଏ ହୋ
ପାଟଶାଢ଼ୀ ଗଣ୍ଡ୍ରା ଗଣ୍ଡ୍ରା ।୪।

ପୁ— ଯାତରେ ବଡ଼ ବଜାର,
ବାଛୁ ବାଛୁ ଆଣିବ ମଲ୍ଲି ଅତର,
ମଲ୍ଲି ଅତର ଲୋ
ଘେନବୁ ଧନା ପଦର ।୫।

ସ୍ତ୍ରୀ— ଥରେ ପଗ୍ ଭଲ ମନା,
ଲେଖେ ଭଣ୍ଡ୍ରାଜଗୁରେ ସବୁ ସାବନା ।
ସବୁ ସାବନା ରେ
ନ ହେବ ଅଭର ଘେନା ।୬।

---

( ୪୨ )

ଗୋଆ ସିବସିର ଜଉରା ବହିଲ
(ହେଲା) ଆଦ୍ୟ ମଗୁଶିର ମାସ,
ଖୀର ଖାଇ ପୁତ ଚରଚେ ରହିଲ
ମାଆମୁହଁ ହସହସ ଲେ, ବୋଇଲ—
ଖିଲା ଲପି ପୋଛୁ ମେଢ଼ୀ ଦମ୍ଭ କଲୁ,
ଚଷାପୁଅ ମାରି ଘାସ ହୋ ।୧।

ଝଳଲାକୁ ମେଣ୍ଢୀ ମୂଳରେ ଅଗୁଳି
କଷରକୁ କଲା ଆଗ.
ଝଲେଇ ଖଳାରେ ସିଂଶା ଭୁଣିଦେଇ
ଯହିଁକି ଯେ ହେଲା ବାଗ ହୋ ବୋଇଲା—
ଚଉଁରୀ ମଥାରେ ଭଉଁରୀ ମାଇଲା,
ଧଇଲା ପାଣ୍ଠିଣ ଅଗ ହୋ ।୨।

— —— —

( ୪୬ )

ଏ ଭରା ବସନ୍ତ ମାସେ
ବଉଳ ମହକ ବାସେ
ମନଚୋର ରହିଲା ତ ବିଦେଶେ
ନଇଲା ମୋ ପାଶେ
ଅରେ ସଖି, ମଲି ମୁଁ ନିରାଶେ ।୦।

ଗାଇଲା କୋଇଲି କୁହୁ
କାନେ ଶୁଭେ ଉହୁ ଉହୁ
ଧଇର୍ଯ୍ୟ ଧରିବ କେହୁ, କହୁ ତ
ସହି ନୁହେ ଆଉ
ଅରେ ସଖି, ଏ ବିରହ ଦାଉ ।୧।

ଗ୍ରୈଷ୍ମ ମଳୟ ସମୀର
ତନୁ କଲା ଜରଜର
ନୟନୁ ଝରନ୍ତ ନୀରଧାର ତ
ବହେ ଝରଝର,
ଅରେ ସଖି, ବନ୍ଧୁ ବିନେ ମୋର ।୨।

ଯଉବନ ଯାଏ ବିତି
ଗୃହୁଁ ଗୃହୁଁ ଗୃନ୍ଧରାତି
ଦୁରୁ ଦୁରୁ ଥରେ ଛାତି ଘାତ ରେ
ନଆସିଲେ ସାଥୀ
ଅରେ ସଖି, ହେଲା ତ ପାହାନ୍ତ ।୩।

———

( ୪୩ )

ଅନାଅ ରେ ଅନାଅଁ ରେ ଅନାଅଁ
ଅନାଅଁ ରେ ମଲ୍ଲୀ ମତ୍ତଗଜ ଗୃଲ୍ ।୦।
ଘନ ନୀଳ ଶାଢ଼ୀ    ତନୁ ପରେ ଜଡ଼ି
ସୁନା ବରନ ଦଶେ ଝଲ ।୧।
ଶ୍ରୀଅଙ୍ଗ ଅଳସେ    ଝୁଲି ଝୁଲି ଅସେ
ଛଡ଼ାଇ ବଣମଲ୍ଲୀ ବେଲ ।୨।
ନାଗରମଣିକି    ଭେଟିବା ଜାଣିକି
ନୀପମୂଳକୁ ଯାଏ ବାଳ ।୩।
ଚହଲ କେତକୀ    ବାଳ ଅସଇ କି
ଠାକି ବସିଛୁ ବନମାଳ ।୪।

( ୪୪ )

**ଫେରି ବସନ୍ତ ଆସେ**
ଫେରି ମହୁଆ ତ ବାସେ,
କଳାକୋଇଲିଟା ଗାଏ କୁହୁ କୁହୁ କୁହୁ କୁହୁ
କାନେ ଲାଗେ ଜହ୍ନୁ ଜହ୍ନୁ ଜହ୍ନୁ ।୦।

ନଷ୍ଟନୁ ମୀର ଝଂକାର
ମାତି ତାର ଗୁଣ ଗାଇ
ଭେଟେ ଯେ ଖୋଜିଲି ପ୍ରିୟା କାହିଁ କାହିଁ କାହିଁ
ପାଦେ ଗତ ଗୁହିଁ ଗୁହିଁ ଗୁହିଁ । ୧ ।

ଭରମେ ଯଦ ଗୋ ବଧି
ମିଳାଇବ ମତେ ନଧି
ନୟନେ ରଖିବ ସାଧି ସାଧି ସାଧି
ବନ୍ଦ ଥରେ ବାନ୍ଧି ବାନ୍ଧି ବାନ୍ଧି ।୨।

---

( ୪୫ )

କାଳିଆ ମାରନା ହୋ ଗିରିଜା ମାରନା ।୦।

ନଈରେ ବାଳିଆ ମଲା,
ନଈରେ ବାଳିଆ ମଲା ।
ଟିକି ଟିଅ ଟିକି ବୁଢ଼ାକୁ ଦେଲା
ଭାଲି ଭାଲି ଧନ ଗଲା ।୧।



ପାଗଲ  ନାହାଲବେଲ

ପାଗଲ ନାହାଲବେଲ,

ବାଟରେ ଭେଟିଲି ଶରଧାବାଲି

ଥକା-ହେଲି ଗୁଲି ଗୁଲି ।୨।

———

( ୪୭ )

ଅମଳ କମଳ ଚରଣତଳକୁ, ଭ୍ରମର !

ମନ ଭ୍ରମର ତୁ ଉଡ଼ିଗଲ ରେ, ମନଭ୍ରମର

ବାଉଳା ନୋହୁ ତୁ          ମନ ସରୋବରେ

ହଂସକୁ ନିଟମେ ଖେଳା ରେ ।୦।

ନାଭି ନାଡ଼ ନାହିଁ          ପଦ୍ମ ଖେଳୁଥାଇ

ପାଖୁଡ଼ା ସହସ୍ର ତାର

ଜୀବ-ପରମର          ଲୀଳା ତ ଲଗିଛି

ଅଲୁଅ କବା ଅନ୍ଧାର ରେ

ତହିଁ ବସିଛି ମେଳା

ଲୀଳା ଦେଖିବୁ ପବନ ଚଳା ରେ ।୧।

———

( ୪୭ )

ନୂଆ ନାଗର କହ୍ନା ଫେରୁଥା ରେ
କୁଞ୍ଜେ ଗୃହେଁ ବସିଛୁ ନାଗରଜା ରେ ।୦।

ଫୁଲଶେଯ ସଜାଇ ଗୁନ୍ଥି ସେବତୀ ଜାଈ
ଦୀପ ଜାଳିଛୁ ସେ ତ ହଜାରେ ।୧।

ପିନ୍ଧିଛୁ ନୀଳ ଶାଢ଼ୀ ହଳଦ କୁମ୍ଭପାଢ଼ି
ଝୁରୁଛୁ ତୋତେ ପର ମଜା ରେ ।୨।

ରଙ୍ଗରତନ ଆସ ଅଙ୍କ-ପଲଙ୍କେ ବସ
ରାଧାନାମେ ମୁରଲୀ ବଜା ରେ ।୩।

---

( ୪୮ )

ମନ । ସେପାର କଥା ଦନେ ଭାବଲୁ ନାହିଁ,
ବସିଛୁ ପାରହେବୁ ଯମୁନା ନଈ । ୦ ।

ଦଦରା ନାଅ ଗୋଟି ମେଘ ଆସୁଛୁ ଘୋଟି
ଝଞ୍ଜା ପବନ ପୁଣି ତା'ଉଲେ ବାଇ । ୧ ।

ବହୁବ ଅଣଗୁଣ ସବୁ ସବୁ ଅଙ୍ଗ
ସାହା ନୋହିବେ ତୋର ପିଅର ଭାଇ । ୨ ।

ଏ ତୋର ଛିଣ୍ଡା ପାଲ ହାତ ମାରବ ବୋଲ
ବୋଲ ନମାନ ନାଅ ଯିବ ବୁଡ଼ାଇ । ୩ ।

---

( ୪୯ )

ଖନ ଭୁଙ୍ଗୀ ରେ, କହ ଯା ବନ୍ଧୁ କାନେ ଥରେ ।
ତା'ଲଗି ଏ ଗୃହବ୍ରତ ଉଜାଗରେ ସାରେ । ୦ ।
ମୁଦଲେ ନୟନ ତାର ଘୂର୍ଣ୍ଣିଯିବ ଦୂରେ
ତା'ଛବି ରଖିଛୁ ଆଜି ଅଖିରେ ଅଖିରେ ।
ମୁରୁକ ହସାସାର, ଗ୍ଲ୍ତଗାର, ମନ ତ ନ ଭୁଲେ ରେ । ୧ ।
ତା'ର ଲଗି ଶୟନେ, ମୁଁ ସପନେ ଡାକଇ
ମଳୟରେ ତା'ର ତନୁ ପରଶ ଲଗଇ,
କୁସୁମ ଅଙ୍ଗେ ତାର, ବାର ବାର, ମହକ ମୁଁ ବାରେ ରେ । ୨ ।

( ୫୦ )

ଚଇତାଳି,—

ଚଇତାଳି ବାଅରେଲି ଚହଟ ଗୃହଦମୀ ରେ
ଅଭିସାରେ ଗୃଲେ ରାମା । ୦ ।
ଅଭିସାରେ ଗୃଲେ ରାମା କିଏ ଟସ ରମଣୀ ରେ ।
ନିରୋଳା ବନ ବାଟେ ଗୃଲେ ସେ ନଦୀଘାଟେ
ଚଞ୍ଚଳ ନୟନ ତାର ଚପଳ ଗୃହାଣୀ ରେ । ୧ ।
ଫୁଲର ବାଜୁ ଚୁଡ଼ି ପଦେ କୁସୁମ ବେଢ଼ି
ନୀଳ ବସନ ବାମା ବେଣୀ ଦେଇଛି ଗ୍ଲଡ଼ି
ସରାଗେ ଜବାଧରା ସହଜେ ଦେବ ଧରା
ବନର ହରିଣୀ ପରା ହେବ କା ଘରଣୀ ରେ । ୨ ।

( ୫୧ )

ବାଇଆ ହାତୀ ରେ, ବାଇଆ ହାତୀ
କୋଉ ବନସ୍ତରେ ଘର,
କିଏ ମାଇଲା ରେ ବାଇଆ ହାତୀକି
ଭାଙ୍ଗିଲା ପଞ୍ଜରା ହାଡ଼ । ୦ ।

ଉଞ୍ଚ ପରବତ କୁଞ୍ଚ କୁଞ୍ଚିକା ଲୋ !
ଅଗନାଅଗନା ବନ,
ବଗ ଯାଇଥିଲା ମାଛ ଧରିବାକୁ
ବଗୁଲୀ ହରଷ ମନ । ୧ ।

ଶୋଇ ପଡ଼ିବ ମୋ ରଙ୍କସଖାଳି ଲୋ
ଡାକିଲା ବାଲୁଆ ନନା,
ବାପା ଯାଇଛନ୍ତି ହାଟ ବଜାର ଲୋ,
ଆଣିଦେବେ ରଙ୍ଗକନା । ୨ ।

---

( ୫୨ )

ନିଦ ଭଙ୍ଗ, ରାତି ଗଲା ତ ପାହି ରେ
କାଉ କୋଇଲି ସହିତେ ଏ ଜଗତ ଜୀବ ଯେତେ
ସଭିଏଁ ଉଠିଲେଣି ଚେଇଁ ରେ । ୦ ।

ଘରକଣେ ଗଦାମାରେ ଯେତେ ଅଳିଆ
ବାସିମୁହେଁ ପାଣି ମାରି ଆଗ ଓଳିଆ ।

ଆପଣା ଚଲ୍ଲି ଢର ଅଗ ଗୁଥଣି କର
ପର ଘର ଅଗୁର- ବଗୁର, ପଛେ ତୋର
( ଭୁଲମନ ) ମାଙ୍ଗସୀ ହେବ ମାଥ କାହିଁରେ ? ।୧।

ବାରବାଟି ଗୃଷ ଥାଇ ନିତ ଉପାସ
ପୃଥୀଅ ଭିଥିରେ ଘରେ ପଶେ ଉଆଁସ
ବେଳହୁଁ ଚେତ ଚେତ ଟିକେ ଗଲେ ଷେତ
ହଡ଼ା ମାରବେ ନାତ, ଉଗାର ହେବେ ଚୋର
( କିଆବଲୁ ) ବାକ୍ରୁଙ୍ଗା ବାଛ ଧାନ ହୋଇ ରେ ।୨।

ଖୁଣ୍ଟ କର ଠାଣି ଘୋଡ଼ା ବାନ୍ଧୁଥା, ପଛେ
ଦୁଆ ନ ସଜାଡ଼ି କାନ୍ଦୁ ନ ଦଅ ମିଛେ,
ନିଜ ବାପର ନାଆଁ- ରଖ ତୁ ପିଠି ବାହା
ସତ ନ ମଣି ସାହା, ହାତ ଶଙ୍ଖାକୁ ଗୁହାଁ
( ଠାଣିକର ) ଘର ପୁଅ ତୁ ଅଣ୍ଟେ କହ ରେ ।୩।

ଅଗ ପିଟା, ପଛେ ମିଠା ସଂସାରେ ଭଲ
ତେଣୁ ଅବୋଧରେ ଭଲ ପଛେ ନ ଭୁଲ,
ମୂଳ ଆପଣା ଢର, ସଜାଡ଼ି ଠାଣିକର
ପଡ଼ିଲେ ବସିସାର, ପଛେ ଗୋଡ଼ ଓସାର
( କଥା ମୋର ) ସତ କି ମିଛ ବାର ତୁହ ରେ ।୪।

ମାଅଠାରୁ ଅଧିକରେ ସୁଖପାଏ ଯିଏ
ମାଆ ତୋର ନୁହେ ବାବୁ, ଡାହାଣୀଟି ସିଏ
ମଧୁର ଭଗଡ଼ଆ— ଯେତେକ ବାହାପିଆ
ଭଣ୍ଟିରେ ଝୁରଦଅ— ଚକ୍‌କଣି କଥାକୁହା,
( ଭୁଲମନ ) ହୃଛୁ ଜୁହାର କର ଭାଇ ରେ ।୫।

ଖର୍ଚ୍ଚଠାଣି ହେଲା ଏବେ ଭାଙ୍ଗିଲା ବାଲି
ହଂସା ଉଡ଼ିଯିବ ଶୋଷେ ମରିବୁ ଖାଲି ।
କୂଅରୁ ମିଠା ପାଣି-ପଡ଼ିଆ ଝାଣିଲାଣି
ଅପଣା ଭାଇ ପୁଣି-ଦୁଆର ମେଲିଲାଣି
(ମରଆଗେ) ଗୁହାରି କରୁ କାହିଁପାଇଁ ରେ ।୬।

---

( ୪୩ )

ଗୁହଁ ଗୁହିଁ ନିଶି ତ ହେଲା ପାହାନ୍ତି
ଦଗାଦାର ଛୋ'ପର ଅଜ ନାହାନ୍ତି ।୦।

କହିଥିଲୁ ନାଗର ରେ, କରି ଅକଟ
ଖଣ୍ଡପଣି କଲୁ ବଳିଗଲା ତ କଣ୍ଟ
ମୋ ତହୁଁ ବଳି କରି—ଅଛୁ କେଉଁ ନାଗରୀ
ରଖିଲା ଛୋଡ଼େ ଧରି—ମଲି ମୁଁ ଝୁରି ଝୁରି ।
ବାସି ହେଲା ତ ମୋର—ଗୁନ୍ଥା ସେବତୀ ହାର
ମିଛେ ସାଜିଲି ଶେଯ ସୁପାତି ।୧।

ଝୁରାଇ ମାରିଲୁ ଗତ ହେଲା ଅସରି
ନୀରଝର ଅଖି ମୋର ନିଦ ପାସୋରି ।
ଭଣିଲୁ ଗୁଣ୍ଠୁଗିର-କଣିଲୁ ମନ ମୋର
ହାଣିଲୁ କାମଶର-କରିଲୁ ଜରଜର
ପରତେ ଗଲି ତୋତେ-ବିଧାତା ବାମ ମୋତେ
କପାଳ ସତେ ଫଟା ନାହାନ୍ତି । ୨ ।

---

( ୫୪ )

ନିଠୁର ଭ୍ରମର, ଫେରିଯା'—
ସପନେ ଆସି ସପନଟି ସାରି ଯା'—।୦।

ଚିହ୍ନିଲି ଚିହ୍ନିଲି ବନ୍ଧୁ ! ମୁଖେ ତୋର ମଖା ମଧୁ
ବୁକୁ ସାରା ବିଷଭରା ଗୋ,
ଫେରି ଯା' ଫେରି ଯା' ମନ କଲୁ ତୁ ନିଠୁର ଯା'
ଫେରିଯା' ଫେରିଯା' ।୧।

ଏବେ ଯଉବନ ଭରା ତୋ ପୀରତି ସ୍ମିତ-ହାସ
ସେ ହାସ ମୋ ଅଗ୍ନି ପରି ଗୋ,
ଫେରିଯା' ଫେରିଯା'—
ମଧୁ ପରାଣୁ ହରି ଯା' ।୨।

---

( ୫୫ )

ପୁରୁଷ— ଫୁଟିଲା ବଣମଲ୍ଲୀ ଦେବି ତୋଳ
ତୁଷି ବସନା ସୁନାଗୋରୀ ଲୋ,
ତୁଷି ବସନା ସୁନାଗୋରୀ ।
ଖାସା ମାଳବ ଯୋଷା, କଳା ଖୋଷା
ଦେଖନରୁ ଟେକି ହାର କରି ଲୋ ।୧।

ସ୍ତ୍ରୀ— ଚତୁର ଚିକଣ କହ୍ନଜାଣୁ ଭଲ
ଏତେ ଫୁଲ ତୋଳ ଅସେ ରେ,
ମତେ ଫୁଲ ତୋଳ ଅସେ ।

ଡାଳେ ଫୁଲ୍ ଥାଉ, ଆପେ ଶୁଖି ଯାଉ
ନ ଆସ ତାହାର ପାଶେ ରେ,
ହୃଦ୍ଭୁ ମହକ ବାସ୍ନୁଥାଉ
ସାରା ବଣ ଚହଟିଯାଉ,
କଳା ଭଅଁ ର ମନ୍ଦୁ ଝୁରୁ,—ଅନୁସର ।୨।

ପୁ— ଭଅଁ ର ପାଇଁ ଏକା, ଫୁଲ୍ ଯୋଖା
ଏ କଥା ଦେଲ୍ କି ପାଶୋର ଲୋ,
କିଏ ବୁଝିବ ବୋଲ୍, ଫୁଲ୍ ମୂଲ
ପଢ଼ିବ ସିନା ମିଛେ ଝୁର ଲୋ ।୩।

ସ୍ତ୍ରୀ— ମନ ମିଶାମିଶି, ପାଣି ତେଲ୍ ନୁହେ
ଫୁଲ୍‌ରେ ବାସନା ସେ ତ,
ପରଖ ନ କର ମନ ଦେବା ତୋତେ
ଧ'ଦକାଅ ନୁହେ ଏ ତ ।୪।
କଂସା ପିତଳ ନୁହେ ଧନ ।
ବଦଳି ଯିବ କଲେ ମନ
ଫାଟିଲ୍ ଦରପଣ ଦଶାପର ଯିବ ସର ।
ମରିବ ସିନା ଝୁରି ଝୁରି ।୫।

---

( ୫୭ )

ଧୋ'ରେ ବାଇଆ ଧୋ'
ଯୋଡ଼ କିଆସ୍ରେ ଗହଳ ମାଣ୍ଡିଆ
ସେଇ କିଆସ୍ରେ ଶୋ' ।୦।

ଉଞ୍ଚ ପରବତ କୁଞ୍ଜକୁଞ୍ଜକା ଲୋ
ନଦୁରୁମାଉସୀ ଘର,
ଅଁ' ଆଲୋ ମାଉସୀ ଶୁଆଇ ଦେଇଯା'
କଲା କାଇଞ୍ଚକୁ ମୋର ।୧।

ଝିର ଝିର ପାଣି-ଝରଣା କୂଳେ ଲୋ
ଝୁଲୁଛି ବାଇଆ ହାଣ୍ଡି,
ମୋ' ବାଇଆ ହାଣ୍ଡି କୋଳରେ ଝୁଲଇ
ପାହୁ ଯିବାଯାଏ ରାତି ।୨।

ବାଇଆ ଧନକୁ ନିଦ ମାଡ଼ିଲାଣି
ଘନଘନ ମାରେ ହାଇ,
ଘୁମାଇ ପଡ଼ ରେ ମୋ ରଙ୍କପସରା,
ଦୁଧ କଲେ କଲେ ଖାଇ ।୩।

---

( ୫୭ )

ଅରେ, ଉଢ଼ା ଜହ୍ୱର ଏ ଦୁନିଆଁ ବେଭାର
ଆଖି ମିଟିକାରେ ଆନ,
ଧନୁର୍ଦ୍ଧର ପାର୍ଥ ଧରି ଯେ ଗାଣ୍ଡିବ
ଦନେ ଜିଣିଲେ ତିନି ଭୁବନ ରେ,
ପୁଣି ସେ, ଗରୁ ହୋଇଲା ମେରୁ ସମାନ ।୧।

ନଳ ରାଜା ବଳ କଥା କଳି ନୋହେ
ସେ ପୁଣି ବାହିଲା ରଥ,

ଧରଣୀ କି ବଣ କଣରେ ଛୁଡ଼ି ସେ
ଜାଣି ପଣତେ ଖାଇଲ ଭୂତ ରେ,
ଜୀଇଲ, ପୁଣି ପରକୁ ପଠାଇ ହାତ ।୨।

ଲକ୍ଷେ ରଜାଙ୍କର ମଉଡ଼ମଣି ଯେ
ଆଜି ଖୋଜେ ଗଛ ଛାଇ,
ନଅତଳ କୋଠା ଝୁମ୍ପୁଡ଼ି ପଡ଼ି ତ
ଧୂଳି ବାଲିରେ ମିଶିଲ ଜାହିଁ ରେ ।
ଦଇବ, କାହା ଗରବ ରଖଇ ନାହିଁ ।୩।

ସକାଳର ଖରା ସଞ୍ଜକୁ ମଉଳେ
ନିତି ତ ପୂନଅଁ ନାହିଁ,
ଆଖି ଥିଲେ ଦେଖ, କାନ ଥିଲେ ଶୁଣ
ଖରା ପଛରେ ଗୋଡ଼ାଏ ଛାଇ ରେ,
ବାଉଳା, ସବୁ ଡେଙ୍ଗା ଝାଳ ତଳି ଛାଇ ।୪।

ଫାଳକ ଗାଲରେ ଚୂନ ଆଉ ଫାଳେ
କାଳି ବୋଲି ଦାଣ୍ଡେ ଗଲେ,
ଦେଖଣାହାରଏ ନାହାବା ମାରବେ
ଢୋର ଢୋଲ ପୂରଯିବ ବଳେ ରେ,
କହିଲ, କାଉ ନ ଖାଏ କି ପେଟେ ହେଲେ ।୫।

ଗଉବ-ପରବ ଧମକ ଚମକ
—ଏ ତ ଦୁ'ଦିନ ପାଇଁକି,
ଭୁ'କାର ମୁଁ'କାର ହୁଙ୍କରନ୍ତୁ କର
କହ ଭୁଣ୍ଡାରେ ଗମ କାହିଁକି ରେ
ହଉଏଁ, ଏକା ମାଟିକି ଯିବା ନାହିଁକି ? ।୬।

---

( ୫୮ )

ଅଖି ଆଖି ଦେଖାଦେଖି—ସଜନି,
ତୁ ଯେ ତାର ସେ ତୋର ସିନା,
ମନ ବିକାବିକି ପରି ସହିଗଲାଣି ।୦।

ମୁଖ ହେଲା ମୂକ ସିନା ରେ ନବୀନା !
ଆଖି ବାରିଲା ଚିହ୍ନା ଚିହ୍ନା ।
ପଲକରେ ମନ ହେଲା ଦିଆନିଆ
ଆଉ କାହିଁକି ଲୁଢଙ୍ଗରି—ମନମରି—କହ ଧନୀ ।୧।

ଛଳା ଆଖି ଚଳା, ଛଳେ ରେ ଛଇଳା,
ମନ-ବେଭାର ସରିଲା,
ଲାଜୁଆ ଲାଜୁଆ ଦରହସ ଖେଳା
ହେଲାଣି ଏବେ ତାର—ଘୃତଗାର-ତୋ ଗୃହାଣୀ ।୨।

---

( ୫୯ )

କାଳିଆ, ଦୂରେ ବଜାଅ ମୁରଲୀ,
ଏକେ ଭରି ଯଉବନ, ଫୁଲ କୁଞ୍ଜେ,
ଅଳି ଗୁଞ୍ଜେ, ଏ ସଞ୍ଜେ ସରିଲି ।୦।

ଆନନ୍ଦ ଭରେ ଗନ୍ଧବହ ମଞ୍ଜୁ ମଧୁରେ-ମଧୁରେ-ମଧୁରେ
କାମିନୀ ଧନୀ ଚଞ୍ଚଳ ବିରହେ ବିଧୁରେ,
ବିଧୁରେ, ବିଧୁରେ ।
ତା'ଭର ସହେନା—ତା'ମନ ମାନେନା ।

ପାଶୋରେ ଲଜ-ମାନ-କୁଳ ଗୋପ ବଧୂରେ-ବଧୂରେ-ବଧୂରେ ।
ଯାଅ କାହ୍ନୁ । ତୁ ମୁଁ କି ସରମେ,
ସରମେ ସରିଲି ।୧।

ସେ ତ କଞ୍ଜ ପଦେ ରଞ୍ଜି ନାହିଁ ରଙ୍ଗ ଅଲତା—ଅଲତା—ଅଲତା,
ତରଙ୍ଗେ ତକାଏ ଖେଳେ ଗୃହୁ ଭ୍ରୂଲତା,
ଭ୍ରୂଲତା—ଭ୍ରୂଲତା ।
ତା' କଜ୍ଜଳ ଲଭନ୍ତୁ ସତେ ନୟନ ମାତର
ଯା'ନ୍ତୁ ଭଙ୍ଗି ଧୀରେ ବଜା ଯା' ଜୁହାର,—
ଜୁହାର ହାରିଲି ।୨।

---

( ୭୦ )

ବାଅ ସିରସିର ବୋହିଲି ଅନାଁ
ବାଅ ସିର ସିର ବୋହିଲି, ଅନାଁ ।।।

ଘୁଇତଲେ ଦହ ଶୀତେଇ ଉଠିଲି
ଖେରି କାଟେ ସାତଗୁଣା ।
ଖିର-ଖିଆ କେଣ୍ଡା ଦୋହଲି ଦୋହଲି
ଉଲୁରି ପଡ଼ିଲି କେନା,
ଡାଲି ଶୁଆ ଚରଗଲା ଚନା—
ମାଟି ମାଅ କୋଠ-ଭଣ୍ଡାରେ ସୋରଷ—
କ୍ଷେତରେ ଭରିଲି ସୁନା ।୧।

( ଆସି ) ମଗୁଣିର ଅଧା ହେଲା ଭ
( ମୋର ) ଧନ ଗଣିଚଣି ଗଲା ତ
ଏକୂଳ ନୋହିଲି, ସେକୂଳ ନୋହିଲି
ମନ କଥା ମନେ ମଲା,
ଆଖି ପୂରାଇ ମୁଁ ଗୃହିଁ ମଲି ଖାଲି
ପେଟେ ଦେଇ ଓଦା କନା,
ହାତ ତଳି ସୁନା ହେଲା ଚୁନା ଲୋ—
କୋଉ କୂଳର ନ ହେଲି ସିନା ।୨।

ଝାଳ ନାଳ ହୋଇ କିଆରୀ ତିଆରି-
ସାରିଛୁ ଧନ ମୂଲିଆ,
ଅଡ଼େଇ ପହରେ ଫଙ୍କା ବରମୂଳେ
ବସିଛୁ ହୋଇ ହାଲିଆ ସେ,
ପୁଅ, ପୁତୁରା, ଭାଇ କାହାର
ଘରୁ ଆଣୁଛୁ ଆହାର ତାର ।୩।

ନଈ ଆରପାରି ଗାଁଆଁ ଲୋ—
( ଅଜ ) ମଙ୍ଗୁଲା ହେବ କନିଆଁ ଲୋ ।
ଶାଢ଼ୀ ମୁଆଁ ଧରି କୁଣିଆଁ ବାହାର
ଆଗରେ ଗୃଲେ ଭାଇଆ ।
ଭୁଆସୁଣୀ ଝିଅ ଘୃତ ଦକ ଦକ
ବାନ୍ଧିବ ସେ ନୂଆ ଘର,
ଶାଶୁ ନଣନ୍ଦେଇ କିଏ ସେ ବାଟାଳ
କେମିତି ସୁନ୍ଦର ବର ଲୋ,—
ଭାଲି କୋହଯାଏ ଲୁହଧାର
ଅଧେ ହସ, ଅଧେ କାନ୍ଦ ତାର ଲୋ ।୪।

ତନୁ ପାତଳୀର କାଖରେ ମାଠିଆ
ମଥାରେ ପଖାଳ ହଂସା
ନବ ଯଉବନ ଉଚ୍ଛୁଳି ପଡୁଛି
ଗୃହିଁ, ଉଡ଼ୁଛ ଯଉବ୍ଛ ହଂସା ଲୋ
ଆଜ ଗୃହାଣୀରେ ଲାଜ ମିଶା—
ମନ ଘରେ ତୋ ବାନ୍ଧିଲା ବସା ।
କେଡ଼େ ମଧୁର ତା' ଦରହସା
ସତେ ପାଳିବା ଜାଗର ଓଷା ଲୋ—
ଯେବେ ହସି ଅନାଇଁବ ଯୋଷା ।୫।
( ଭାଇ ଭାଉଜ )

———

( ୭୨ )

ମେଘକୁ ସୁନ୍ଦର ଜହ୍ନ ।
ଯୋଉଥିକ ଯାହା ଦଇବ ଖଞ୍ଜା,
ମଥାକୁ ଚୋପି ଚନ୍ଦନ ।୧।

କୋଡ଼ କୁ ସୁନ୍ଦର ବେଣ୍ଟ ।
ଠିକ ଚଢ଼େଇକ ମାନଇ ସିନା,
ସରୁ ଗୋଡ଼ ସରୁ ଥଣ୍ଟ ।୨।

ଦେଉଳ ଉପରେ ନେତ ।
ବାହୁ ଣ୍ଡି ନନାକୁ ଛତା ପଇତା,
ଚମ୍ପାଫୁଲ ପାଇଁ କେତ ।୩।

ଚଷାପୁଅ ଝାଣ ବାହା ।
ପେଟ ଗୃଖଣ୍ଡକୁ ଖାତର କଅାଁ,
ଥିଲେ ତା' ହାତରେ ଦାଅ ।୪।

ହଳ ମୁଠା କର ପେଷା ।
ହାଡ଼ ମାଟି ହାଡ଼ ମୁଣ୍ଡରେ ଡେଉର,
ଚଷା ଲକ୍ଷେ ପେଟ ପୋଷା ।୫।

ବାଉଁଶ ମୂଲରୁ ଗୋଜା ।
ନାହାକ ପୂଅର ଖଡ଼ ଗୋଟାଳ,
ପଣ୍ଡିତ ପୁଅର ଖୋଜା ।୬।

ଗଡ଼ଡ଼ ଗୋଠକୁ ଗାଈ ।
କୁଳର ବେଉଷା ଜଗିଲ୍ଲ ଯିଏ,
ବାପର ପୁଅଟି ସେଇ ।୭।

---

( ୭୬ )

ଖଞ୍ଜି ଦେଇଛୁ ରେ, ବଧାଡା ବଜାଣି ପୁଅ,
ବାସି ପଖାଳକୁ ପୋଡ଼ା ବାଇଗଣ, ଭବତ ଭାତକୁ ଘିଅ ।୦।

ରଜାପୁଅ ପାଇଁ ଅଢ଼େଣି, ତରାସ
ଦେଉଳ ଉପରେ ନେତ,
ହଳିଆ ହାଡକୁ ଜୁଆଳ ଲଙ୍ଗଳ
ନାଉଚା ପୁଅକୁ କାତ ।୧।

କାଞ୍ଚି ତୋରଣିକ ରସୁଣ ପରଜା
ବାସୁଥାଏ ମହମହ,
ଯାହା ଯୋଉଥିକ ମାନବ, ସେ କଥା,
ତାହା ପାଖେ ପାଖେ ଥୁଅ ।୨।

କୋଉଁକୁ ସୁନ୍ଦର ବେଣ୍ଟ ହେଲା ସିନା,
(ମୁଣ୍ଡି) କାକୁଡ଼ି ଲଠାକୁ ରଞ୍ଜା,
ଭାତ ଖଣ୍ଡେଥିଲେ ପାଇକ ପୁଅର
ଘଟୁଅ କାହାକୁ କହ । ୩ ।

ନୂଆବୋହୂ ପାଇଁ ଅଲତା ସିନ୍ଦୂର
ଶାଢ଼ିକ ସୁନ୍ଦର ଧଡ଼ି,
ପେଟ୍ରୁ ଚଢ଼େଇକ ଢୋରଡ଼ି ସୁନ୍ଦର
ବୁଢ଼ାକୁ ସୁନ୍ଦର ବୁଢ଼ୀ । ୪ ।

ଫୂଲକୁ ସୁନ୍ଦର ମହକ, ଗୋଠକୁ କଅଁଳା-
ବାଛୁରି-ତଅଁ,
ବାବାଜୀ ପାଇଁକ ଡୋର କଉପୁନି
ଚୁଲିକ ସୁନ୍ଦର ନିଆଁ । ୫ ।

କୁଳର ବେଉସା ଜଗି ଚଲେ ଯିଏ
ସେଇ ଠେକ ଗୃଲେ ମୁହିଁ,
ବଗ ବେକେ ଭିଙ୍କି ହାର ଦେଲେ
କାହୁଁ ମାନବ ସେ କଥା କହ । ୬ ।
(ଭାଇଭାଉଜ)

---

( ୭୩ )

ଆଖି ଭେଲକି ଲଗାଇ ଦେଲ— ।୦।

ଚହଟ ଚକ୍‌କଣ ସୁନାର ହରିଣୀ
ଉଆଁ ଚରିମାର ଗଲ,
ଏଡ଼େ ଜାଣିବାର ସୀତା ଠାକୁରାଣୀ,
ମନକୁ ଭୁଲେଇ ଦେଲ ।
ଭାଲ କେମିତ ବାଉଲା ହେଲ,
ରାମ ବନିଲେ ମାଇଧୀ-ବୋଲ ।
ନୋହିଲ କଥାକୁ ଲୋଭେଇ ଧାଇଁଲେ
ଅଣ୍ଟୁ ଚଣ୍ଟୁ ଛୁଡ଼ିଗଲ । ୧ ।

ଜଦାଶିଙ୍ଗ ଭାଠ ଅରୁଗୁ ଧରିଲ
ନାଆଁରୁ ଭାଡିଲ ବାଠ,
ଶୋଲ ଫୁଲ ଧରି ଜଉର ପାନ୍ନାଅଁ
ମାଙ୍ଗୁ ମୂଲେ କଲ ନାଠ,
ପାଠ ହାଠକୁ ହଟେଇ ଦେଲ
ଖୋଟ ମାଟି ମୂଠି ରଜା ହେଲ
ବାଠ ହୁଡ଼ିବାରୁ ରାମ ତ, ସୀତାଙ୍କୁ
ରାବଣ ଉଠାଇ ନେଲ । ୨ ।

ଘର ଉହ ମୂଲେ ଗୋଇଠା ବଜାଇ
ଭଟାରିରେ କଲ ମିତ,
ମନ ଭୁଲଣିଆ ଛଟକରେ ଭୁଲି
ମିଛକୁ ମଣିଲ ସତ,

ସତେ କାଳ ବ୍ୟସ୍ତ ହେଲା—
ଅସି ବିନାଶ ହାବୁଡ଼ ଗଲା ।
ଆମ୍ବଡ଼ାଳେ ଆମ୍ବଡ଼ା ଫଳିଲା ।
ଧନ କୋଉଧନ ଗୀତ ପାଲଟିବ
ସେତିକି ବାକି ରହିଲା । ୩ ।

ଖସା ମାଲପାକୁ ଆଡ଼େଇ ଗୃଲିଲା
ବାର ମିଶା ମାଟି ଢେଲା,
ଘର ଘରଣୀଏ ରଙ୍ଗ ଦେହେବ
ବୋଉଳିକୁ କଲେ ଗେଲ
ତହିଁ କୁମ୍ଭୁନ୍ନ ମୋହର ମନ —
ତାକୁ ଲୋଡ଼ା ନାହିଁ ଘଡ଼ ପଲା ।
ଅଖିଠାର ମାର ମାଇ ଛବିଠାଏ
(ତାର) ମହତ ବଢ଼ାଇ ଦେଲା । ୪ ।

ଉଷୁନା ଧାନରୁ ଗଜା ଗଜେଇବ
କାଳ ହେଲା ବିପର୍ଯ୍ୟସ୍ତ,
କବିଚନ୍ଦ୍ର ବୋଲେ କେବେ ଦେଖାହେବ
ବିଗୁଡ଼ୀ ମୂଷାର ମିତ ।
ସିଧା ଓଲଟା ଏବେ ତ ହେଲା—
ମାଆ ନଥାଇ ଛୁଆ ହୋଇଲା ।
ଟେଛ ଡାଳ ଗୁଡ଼ ଚେରରେ ଏଥର
ଫଳିବା କାଳ ଆସିଲା । ୫ ।

( ଭାଇ ଭାଉଜ )

———

( ୬୪ )

ଅଷାଢ଼ ବରଷା ଦିନେ,
ରଖିଗୁ ସଜନୀ ମନେ,
ଖୋଷିଥିଲ ଗଭିରେ ତୋ କଦମ୍ବର ଫୁଲ ଗୋ,
ଶୋଭର ତ ନାହିଁ ସମତୁଲ ଗୋ ।୧।

ମୋ' ସଣି ଦେଲ୍ ଗୋ ଛୋଟେ
ପାଶୋର ନ ଦେବୁ ସତେ,
ଶିରମୁଖ ଦେଖୁଥିଲ୍କୁ ତୁ ପରା ମୁକୁରେ ଗୋ,
ଗାର କର ରଖିଛୁ ବୁକୁରେ ଗୋ ।୨।

ଦିନ ଯିବ ମାସ ଯିବ,
ଯୁଗ ୍ର କଥା ଥିବ
ନିତିଦିନ ଝୁରୁଥିବ, ଜୀବନଟା ମୋର ଗୋ,
ଝୁରି ମରିବାର ହେବ ସାର ଗୋ ।୩।

କବଣଗି କରେ ଜଣା,
ସତେ ରେ ବାଣୀ-ବଚନା
ଫୁଲ ଭୁଲେ ଠେକି ଦେଲ ପରାଣଟି ମୋର ଗୋ
ରଖ, ମାର ଯାହା ମନ ତୋର ଗୋ ।୪।

---

( ୭୬ )

ଚମ୍ପାଗୋଷ୍ଠୀ ଲୋ, ଚମ୍ପାଗୋଷ୍ଠୀ,
ମିଛେ, ମନ୍ଥରୁ ସିନା ଝୁରି ଝୁରି ।
କାଳିଆ ଯେତକ ସେ ତ ନୁହଇ କାହାରି ଲୋ ।୦।

ଶୁଣିଥିବୁ ତୁ ତ ବରଜରେ ଥିଲା
କଜଳ କାଳିଆ କାହ୍ନୁ,
ପୀରତି ଡୋରରେ ବାନ୍ଧ ରାଧା ମନ
(ପୁଣି) ପାଶୋରି ଦେଲା ସେ ମନୁ ଲୋ,
ଝୁରିମଲା କିଶୋରୀ
କଳା ବଇଁଶୀ ହେଲା ଭଗାରି ।୧।

କାଳିଆ କଜ୍ଜଳ ମେଘ କୋଳେ ଶୋଇ
ବିଜୁଳି କି ହରବର,
ହସି ଦେଇ ଅଡ଼େ ପଦାକୁ ଗୃହିଁଲେ
କି ଦେଖିବ ରାଗ ଢାରି ଲୋ,
କଳା କାହ୍ନ ଅବୋରି
ମେଘ ଦେଲାତ ରଡ଼ି ଗୁମ୍ଫରି । ୨ ।

---

( ୭୭ )

ଲୁଅଁର ପୁନେଇଁ ଜହ୍ନ ଲୋ, ଫୁଲ ବଉଳ ବେଣୀ ।
କାଲି କଥା ପୁଣି ଅଳକା ଅନ୍ତର
ସମାନ ନ ଯାଏ ଦିନ ଲୋ, ଫୁଲ ବଉଳ ବେଣୀ ।୧।

ନବ ଯଉବନ ଭେଳ ଲୋ, ଫୁଃ ବଃ
ଅଖି ପିତୁଲାକେ ଏପଟ ସେପଟ
ଭାଙ୍ଗିଯାଏ ଟାଣି ଓଜ ଲୋ, ଫୁଃ ବଃ । ୨ ।

ଚନ୍ଦ୍ରମା ବଦନୀ ରାଣ୍ଡ ଲୋ, ଫୁଃ ବଃ
ଫୁଲସଜ ପିନ୍ଧି ଟାଙ୍କି ବସିଥିଲୁ,
କହ୍ନାଇର ଭେଟ ପାଇଁ, ଫୁଃ ବଃ ।୩।

କହ୍ନି ଫୁଲ ଗନ୍ଧଗନ୍ଧ ଲୋ, ଫୁଃ ବଃ
ହତ ପାହାନ୍ତାକୁ ନ ଥିବ ଗୋଟିଏ,
ସଞ୍ଜେ ବାସ ମହମହ ଲୋ, ଫୁଃ ବଃ ।୪।

ପୁଚି ଲୋ—
ଯାଅ ଯାଅ ଘୁଞ୍ଚି ଲୋ,
ବାଆ ସୁଲୁ ସୁଲୁ ବହୁଚି ଲୋ ।
ଫୁଲ ଘୁଞ୍ଚି ଘୁଞ୍ଚି ଯାଉଛୁ ଲୋ ।
ପାଖୁଡ଼ା ଭିତରେ ହଳଦୀ ଲଗେଇ
ମଧୁର ମହକ ଦଉଚି ଲୋ ।
ଉଗ୍ର ଟିପି ଟିପି ହସୁଚି ଲୋ,
କହ୍ନ ଛପିଛପି ଗୁହୁଁଚି ଲୋ,
ବଉଳ-ଗହଳି ପତର ଘୁଞ୍ଚି ଲୋ,
ଲୁଚକାଳି ସତେ ଖେଳୁଚି ଲୋ ।୫।

( ୬୭ )

ମଝିନଈ ମେଘୁଆ ରାତି,-ମେଲିଛି ମୁଁ ଦଦରା ନାଆ,
ମଲା ଗଲା ନାହିଁ ମୋ ଡର,-ନ ଜାଣେ କେ' ମୋ ସାହା ।୦।

ଗଗନର ପବନ ଦୋଳା—ଦୋଳି ଖେଳେ କି ରାଗିଣୀ,
ଭାଷା ତାର ଅବୁଝା ମୋର—ସପନର ଗୋପନ ବାଣୀ ।
କାନ ବୁଝେ, ମନ ବୁଝେନା-ଆଖି ଖୋଜେ ତାହାର ରାହା ।୧।

ଦୂରବନ ଫୁଲରୁ ଆସେ—ହସ ମିଶା ଅଜଣା ବାସ,
ଛୁଅଁ ତାର ଭୁବନ ଭୁଲା—ହରେ ମୋର ସବୁ ପରାଣ,
ଅନମନେ ଅନାଇଁ ଥାଏଁ—ଟାଣି ନିଏ ପୂବେଇ ବାଆ । ୨ ।

---

( ୬୮ )

ଠସକି ଠସକି ପଡ଼େ ଘାମ୍, ହେ ନାଗର ଶ୍ୟାମ୍ !
ଠସକି ଠସକି ପଡ଼େ ଘାମ୍ ( ହେ ନାଗର ଶ୍ୟାମ୍ ) ।୦।

ରାଇ ବନେ ଝୁ ରେ ବନେ ନଟନ୍-ଚୂଡ଼ା ଶ୍ୟାମ୍,
ଏଇ ବହାନେ ଚଲ ଧନୀ ଗୋ, ଗିରି ଗୋବର୍ଦ୍ଧନ ଗୋ ।୧।

ଗୋପ୍ ନଗରୀର୍ ଯେତ ଗୋପୀନ୍
ଯାଏ ମଧୁବନ୍
ମୋହନ୍ ବାଂଶୀ ଦୋଳଏ ଢଳି
ନତୁନ୍ ଯଉବନ୍ ଗୋ ।୨।

ନିଠୁର୍ ଢାଲି      କାଦମ୍ ତଳେ
ଡାକେ ଧନୀର ନାମ୍,
କେ ଧରିବେ ଧୈରଯ୍ ସେ ଯେ
ନିଲ୍ ସବାର୍ ପ୍ରାନ୍ ଗୋ ।୩।

ଢାଲି ଢାଲି କୁସୁମ୍ ମାଲି
ହବେ ଅଙ୍କାରନ୍
କାଲି ବଲେ କିଶୋରି ଲେ,
ତେଜ ଅଭିମାନ୍ ଗୋ ।୪।

———

( ୭୯ )

ଦୁନିଆଁରେ ନିତି ସଞ୍ଜେ ନୂଆ ବାହାଘର ।୦।

କୁସୁମ ଭ୍ରମର ବଭି-ମଳୟ ପରାଗ ଅବା,
ଗୁରିଅଡ଼େ ବଭି ଶୋଭି, ରସ କାରବାର ।୧।

ଦିନ ଭୁଲେ ରାତି ବିଭା, ବିଜୁଳି ଚଢ଼କ ଶୋଭା,
ତାରା ଚନ୍ଦ ବାହାଘର;—ସବୁ ଖେଳଘର ।୨।

ହସ ସଙ୍ଗେ କାନ୍ଦ ବିଭା, ସବୁଠାରୁ ମନ ଲୋଭା,
ଏ ବିଭାରେ ଭୋଜି ଭାଗ ଉମର ଆମର ।୩।

———

( ୭୦ )

ବନୋଦନୀ ରାଈ (ସଖୀ)

(ତୁ) ଏକା ଅସି କୁଳବାହୁ ଏଇ ଯମୁନା ତୀରେ,
(ତୁ) ବଜନ ଘାଟେ, ବନ୍ଧୁ ନାହଲେ ଫୁଲ ସଞ୍ଜଠାରେ ଲୋ ।୦।

ସେ ପାରରେ ବଂଶୀ ଡ଼ାକେ ପୁରବୀର ସୁରେ,
ଭରୁ କୁମ୍ଭ, ଚାହିଁ ବାର ତା'ର ଛାଲେ ଛାଲେ (ବନ୍ଧୁ)
ମନ ଭରୁ କି, ଜଳ ଭରୁ ତୁ ଗୋ ?
ତୋର କୁମ୍ଭ କି ନ ଭରେ ଲୋ ।୧।

ତା'ର ଲାଗି ଶିରେ ତୋର କଳଙ୍କ ପଶରା
ସେଇ କଳଙ୍କ ଫୁଲ ମଣି ତୁ କଲୁ ଗଳାମାଳା
ସାଇ ଲୋକେ ତୋତେ ଚୁହିଁ, ଗଲେ କର ଠାରୁ,
ହସିହସି କହକହୁ ଦେଖାଇ ଶିଖାଇ (ତୋତେ)
ତୋର ମନେ ନାହିଁକି, କି ହୋଇବ
ନଣନ୍ଦ ଦେଖିଲେ (ତୋର) ।୨।

———

( ୭୧ )

ନିତି ନିଶିଥ ସପନେ, ଗୋପନେ,
ତନୁ ପରଶେ, ନମାବନେ
ନିତି ଶୟନେ ନୟନେ, ଗୋପନେ,
ତନୁ ପରଶେ, ନମାନେ ।୦।

କେତେ ତା ଚରଣ ଧରି, ମିନତି କରିଲି ଗୋ,
ମୁଖେ ତାର ମଧୁ ଭରା—ଗରଳ ମରମେ,
ମୁଁ ଦେଇ ସରଳ ସରମେ ।୧।

ନୀଳ ଯମୁନାର କୂଳେ, ଲଳିତ ସେ କଦମ୍ବ ତଳେ
ବେଣୁଧର ରାଧା ରାଧା ଗାଏ ତ ବିଜନେ,
ନାଚେ ନୟନେ ନୟନେ, ଗୋପନେ,
ତନୁ ପରଶେ, ନମାନେ ।୨।

ଆଜରେ ଜାଗିବ ନିଶି—କାଳିବା କାଗର ବସି
କାନ୍ତ ଆସି, ଯାଏ ଖସି—ଧରିବି ମୋହନେ,
ସାଧ ଏତିକି ଜୀବନେ ।୩।

ଅନୁରାଗ ପାଶୋରିଲି, ମଧୁପୁରେ ଗଲି ଗୋ,
ରାଧା ମଲି-ଗଲି ଥରେ ସେ ନ ବିଚାରିଲି ଗୋ
ହରିନେଲି ମନ, ମାନ ନିଠୁର ପରାଣେ,
ଲେଖା ଦହନ ଜୀବନେ । ୪ ।

———

( ୭୨ )

କାଳିଆ କଜ୍ଜଳ ନବଘନ,
ବହୁରେ କହିବୁ କି'ରେ ବିରହ ବେଦନ ।୦।
ହୃତ ତୋର ବକପନ୍ତି—
ଦୂରଦେଶ ଯା'ର ଗତି,
କହିବୁ ଏକା ତା' ଲାଗି
ବିଷ ଅଶନ, ବସନ ।୧।

ବଣମଲ୍ଲୀ ହସିଲଣି—
ଅଧର ବୋଳ ହେଲଣି,
ସଜ ହେଲଣି ନାଗମ୍ବ
ବାର୍‌ ତ ପ୍ରିୟ ଆଗମ ।୨।
ମୁଁ ଏକା ରେ ଅଭାଗିନୀ
ନସରେ ଧନ ରଜନୀ,
ସବୁର ସୋହାଗ ହେର୍‌
ଦହୁଛି ସତେ ଜୀବନ ।୩।

———

( ୭୩ )

ମାଟି ମହକିଲା ପାଣି ବରଷିଲା
ବୁଅଳୁ ଧଇଲା କଡ଼ି,
ପଥର-ଗନ୍ଧରୁ ପାଣି ଉବୁକିଲା
ନାଳ ପାଣି ଆସେ ବଢ଼ି,
ହୋ ବୋଇଲା—ବୁଦାମୂଳେ ବେଙ୍ଗଦେଲା ରଡ଼ି । ୧ ।
ହଡ଼ବାଡ଼ ଡେଇଁ ପାଣି ଉଚ୍ଛୁଳିଲା
ମୀନ ହେଲେ ହାଉଯାଉ,
ପାଣି ସୁଅ ମୁହେଁ ଧଉଁସ୍ପା ବସିଲା
ଚେଙ୍ଗ ଦେଲେ ଚଲ ଭାଉ ।
ହୋ ବୋଇଲା—ଗୃହୀ ଖୁସି କେ କହିବ ଆଉ । ୨ ।

———

( ୭୪ )

ଗୃହମୁହାଁ ଫେରି, ଫେରିଗଲ୍ଲ ଚା । ୦ ।

କୁଞ୍ଜତଳେ ସଞ୍ଜବେଳେ     ରଙ୍ଗମଖା ବଉଦ ଖେଳେ
ଯଉବନଅଳସୀ ଲୋ,
ଅଫୁଟା କଥା ଯେତେ     କଜଳଗାରେ ସତେ
ଲେଖି ଲେଖି ଗଲ୍ଲ ଚା । ୧ ।

ଲୁହ ଭରା ସେ ଆଖି     ମନର କଥା ମାଗି
ମଉନେ ଦେଲା ଡାକ ଲୋ,
ରଙ୍ଗ ଅଧର ତା'ର     ଦେଖିଛି ଥରବାର
ଗୃହିଁ ଗୃହିଁ ଗଲ୍ଲ ଚା । ୨ ।

ବନ୍ଦକଲା ତା ପାଦକୁ     ଛନ୍ଦ ଦେଇ କେ' ସତେ ଗୋ
ଭରା ତାର କଳସି,
ଚହଲିଗଲା ପରା     ବସନ ଭିଜାଇଲା
ଲାଜେ ସରି ଗଲ୍ଲ ଚା । ୩ ।

କହୁଲା କବଶଣୀ     ଛଇଳା ଯାଏ ଲସି
ଗୃହ ଅଙ୍ଗ ଭେଟିଲେ,
ତା' ଅଙ୍ଗ ତଳେ ସତେ     ଲୁଚି ଲୁଚି କେ ମୋତେ
ଠାରି ଡାକି ଗଲ୍ଲ ଚା । ୪ ।

( ୭୬ )

ବଡ଼ ବରଗଛ ଗୃହିଁବା ଆଗରୁ, ଠେଙ୍ଗା ଠାଣ କର ବାବୁ,
ଘରପୁଅ ବୋଲି ଠାଣକର ଭଳ
(ତେଣେ) ଭାରତୀୟ୍ ପରେ ହେବୁ ରେ,
ସଜ-ମଜଜମଲ୍ଲୀ,
ଭାଙ୍ଗିଯିବ ଅଣ୍ଟାଭଙ୍ଗା ଗୃଲି । ୧ ।
ଆଗରୁ ଗୃହିଁଲେ ପଛପଟ ତେଣେ
ଓଇ ଧରଲଣି ଅମା,
ଭତରୀ ଖଣ୍ଡିକ ଫାଟିଲା ବେଳକୁ
ହୋଇଥିବ ପରୀ ଚେନା ଚେନାରେ
ସଜ-ମଜଜମଲ୍ଲୀ—
ଭାଙ୍ଗିଯିବ ଅଣ୍ଟାଭଙ୍ଗା ଗୃଲି । ୨ ।
ଖୁଣ୍ଟ ଠାଣଥିଲେ ମାଗିଯାଚ ବାବୁ;
ଗ୍ଲାଆଣି କରବୁ ଅବା,
ମୂଳମାଟି ତେଣେ ପଡ଼ଣା ଛାଡ଼ୁଛୁ
ଗୃହିଁ ରହଥିବୁ ହୋଇ ହାବା ରେ
ସଜ-ମଜଜମଲ୍ଲୀ—
ଭାଙ୍ଗିଯିବ ଅଣ୍ଟାଭଙ୍ଗା ଗୃଲି । ୩ ।
ମୋଟ ବୋହ କୁଲି ଜାତ ବୋଲାଇଲୁ
ଅଚ୍ଛୁବ, ମୂଲିଆ ହେବାକୁ ମନ,
ବାପ ଅଜା ନାଆଁ ଦାଣ୍ଡରେ ପକାଇ
ମରୁନାହୁଁ, ଧିକ୍ ତୋ ଜୀବନ ରେ
ସଜ-ମଜଜମଲ୍ଲୀ—
ଭାଙ୍ଗିଯିବ ଅଣ୍ଟାଭଙ୍ଗା ଗୃଲି । ୪ ।

ଦେଶ ଗଲା ତୋର, ଭାଷା ଗଲା ତୋର
ଯାଏ ଜାତିଅଣ ଟେକ,
ପରଲଗା ପିନ୍ଧ ଯାତକୁ ଯାଉଛୁ
ଲାଜ ନାହିଁ ଟେହେଲ କି ଅଭେକ ରେ
ସଜ-ମଉଜମଲ୍ଲୀ—
ଭାଙ୍ଗି ଯିବ ଅଣ୍ଟାଭଙ୍ଗା ଗୁଲି । ୫ ।

ଥୋକେ ବୋଲ୍ଛନ୍ତି ଭାରତୀୟ କହ
ଓଡ଼ିଆ ତ ଗ୍ଲେଟ କଥା,
ମୂରୁଖ ମୁଁ ତାଙ୍କୁ ପଗୁରୁଛି କହ :—
ମୁଣ୍ଡ ନ ଥାଇ କି ମୁଣ୍ଡବ୍ୟଥା ରେ
ସଜ-ମଉଜମଲ୍ଲୀ—
ଭାଙ୍ଗି ଯିବ ଅଣ୍ଟାଭଙ୍ଗା ଗୁଲି । ୬ ।

ଗଲା ଫୁଲଟର, ଗଲା ତ ଡୁଡୁମା
ମାରିନେଲେ ଗୁରି ଅଣ୍ଡୁ,
ଭାତ ପାଣି ବିନା ସାଅନ୍ତ ହୋଇଥା’
ଭରମରେ ସିନା ଫୁଲ୍ଟାଙ୍ଗୁ ରେ
ସଜ-ମଉଜମଲ୍ଲୀ—
ଭାଙ୍ଗି ଯିବ ଅଣ୍ଟାଭଙ୍ଗା ଗୁଲି । ୭ ।

ବଢ଼ା ପତରକୁ ପାରୁଶ କଲେଣି
ପରଦେଶୀ ଖୁଣ୍ଟଖିଆ,
ଜୀଅନ୍ତା ମଡ଼ା ରେ । ଅଛୁର ଗୁହିଁଛୁ ?
ମାଆ, ପରଡ଼ୁଳି ତଳେ ଠିଅ ରେ
ସଜ-ମଉଜମଲ୍ଲୀ,
ଭାଙ୍ଗିଯିବ ଅଣ୍ଟାଭଙ୍ଗା ଗୁଲି । ୮ ।

---

( ୭୭ )

ଘନ ନୀଳ ଯମୂନା ଜଳେ
ଚକ୍ଷୁଣି କାଳିଆ ଖେଳେ ସଖି ।
କଳା ଖଞ୍ଜନ ଖେଳିଲେ ସତେ
ଠାରେ ମୋତେ କଳା କଳା ଆଖି । ୦ ।

ଢେଉ ପଥା ପାହାଚେ ବାଜେ
ଦେଖେଁ କଳା ଗିଲା ଶେଜେ ଲୋ' ।
ମୁଁ, କଳା ବୋଲି ଚମକି ଉଠେ
କୋଇଲି ଦେଲେ ଡ଼ାକ ଲୋ,
କୋଇଲି ଦେଲେ ଡାକ । ୧ ।

ସୁଆମନଝା କଅଁଳ ଢ଼ଙ୍କେ
କଳା ହାଥ ଠାରେ ଗୋ,
ମୁଁ, କଳା ବୋଲି ତମାଳର ବାଆଁରେ ଉଭାରେ ଗୋ,
ବାଆଁରେ ଉଭାରେ । ୨ ।

ଉଡ଼ିଗଲେ କୃଷ୍ଣକୋଇ
ମନେ ପଡ଼େ କୃଷ୍ଣ ଭାବ ଲୋ,
ମୁଁ, କଜ୍ଜଳ ନ ଦେନେ ସଖି,
କଳା ଆଖି ଦେଖି ଲୋ
କଳା ଆଖି ଦେଖି । ୩ ।

( ୭୭ )

ଅରେ, କର୍ପୂର-ଦଳା ସୁନାବରନା,
କା ଶୁଣି କାସ କରୁ କଳନା ? । ୦ ।
କୁହ, ଯାଉ, ସେବତୀରେ କର ଆଦର
ଗୁନ୍ଥି ରଖିଥାଅ ହାର ମାଗି ଅଧର,
ଆସିବେ ନବଘନ—ନହୁଅ ଛନଛନ
ଛଳ ନୟନୁ ବନ. ନ ଢାଳ ଅଭ ଧନ !
ବାଜିବ ସେ ମୁରଲୀ,—ରାଧା ରଖ ଜୀବନ,
ବଢୁଅ ରେ, ପୂରିବ ସିନା ମନ କାମନା । ୧ ।
ଢଳା ଆଖି ତଳେ ଟଳା କଜ୍ଜଳ ଗାର,
ଗଳାରେ ଝୋ କରୁ ଖେଳା ବଉଳ ହାର ।
ନୀଳ ବରନ ଶାଢ଼ୀ-ତନୁରେ ଥାଉ ଜଡ଼ି,
ଫୁଟିଲି ଯଉବନେ କମ କାହ୍ନିଲି ଭଢ଼ି,
ପଣ୍ଡରେ କବରୀଉ କାଏ ସେ ଥିଲି ଗଢ଼ି,
ଛଇଲାରେ, ହାର ମାନିବ ତୋରେ, ମାର ନା । ୨ ।

— — —

( ୭୮ )

ବରଷା ଅସେ ସଖୀ, ସେ ତ ନାହିଁ କୁଞ୍ଜବନେ,
ଭରସା-ହର ମର ଭୃଙ୍ଗ ବନେ କଞ୍ଜ ମନେ । ୦ ।
ଫୁଟିଲି ବଣି ମାଲତୀ, ଥରିଲି ଥମକି ଯୁଥ
ପାଶୋର ଦେଲି ସତେ ପ୍ରୀତିସାଥୀ
ରସେ ମାତି, କାହିଁ ଲୋ—
ପଡ଼ୁର ସଜନୀ ଘନେ । ୧ ।

ଦେଖ ତ ଡ଼ାକ ଲେ, କାନନ ଭେକା ଲେ,
ମୋ ଦୁଃଖ ଦେଖି ଲେ, ସଖିଲେ
ନୀରବେ ନୀରବ ନୟନୁ ବରଷେ,
ମନା ତ ନାହିଁ ମାନେ-ନାହିଁମାନେ-ନାହିଁମାନେ ।
ଜାଣୁ ତ ସେ ଜାଲିଆ, କପଟ ଦଗାଦିଆ ଲେ,
ଲୁଚିନା, କହେ କବିଚନ୍ଦ୍ର ଗୋପ୍ତ କାନେ କାନେ—
କାନେ କାନେ—କାନେ କାନେ । ୨ ।

———

( ୭୯ )

କେନା ଡ଼ାକେ ଡ଼ାକେ କଢ଼ି ତ ଧଇଲୁ
କାଲିକି ଫୁଟିବ ଫୁଲ,
ପାଣି ଢ଼ାଳି ମୂଳେ ବଢ଼ାଇ ଥିଲୁ ତୁ
ଆଜ, କିଏ ବୁଝିବ ତା ମୂଲ ଲେ,
ତୁ ଯେ ରହିଲୁ ଦୂରେ,
ମନେ ବିଚାରିଲୁ ନାହିଁ ଥରେ ଲେ ।୧।
ଧନ ଧନ ମନ-ସୁଖ, ଭାବ ମନେ
କି ଥିଲୁ କି ହେଲୁ ଗୋପ୍ତ,
ଏଡ଼େ ଅବିବେକୀ ହେବୁ ବୋଲି ମନେ
ସତେ, କିଏ ସେ ଥିଲା ବିଚାରି ଲେ—
ଛଳ ଖେଳିଲୁ କେତେ,
କଟ ଧୀଟ ଯେନ ହେଲୁ ସତେ ଲେ । ୨।

———

( ୮୦ )

ମନା ନ ମାନିଲି ମୋର,
ମୂଦ ଦେଲେ ଆଖି ପଥ ଲୁଚି ମନ-ଚୋର ।୦।

ଯମୁନା ଘାଟରେ ସଖି—ଲୁଚି ବସିଥିଲେ କାହ୍ନି
ଅମାନିଆଁ ଏଡ଼କି ସେ ବଇଁଶୀଟା ତାର ଲୋ
ମହତ ନରଖେ କାହାର । ୧ ।

ପଶିଲି ଯମୁନା ଜଳେ, ଜଳାଗୁଇ ଛଳେ ଖେଳେ
ଅହେପାଶେ ଚନ୍ଦ୍ରଦଣେ ଘୂରି ବୁଲେ ମୋର ଲୋ
ଗଣି ମୁଁ ପକାଉଛୁ ତୋର । ୨ ।

ବରଜବ କାହ୍ନିଁ ଗଲେ—ପରାଣ ଛୁଡ଼ନ୍ତି ହେଲେ
ସଁପିତ ସାରିଛୁ ପ୍ରାଣ ଚରଣେ ତାହାର ଲୋ
ନୁହେଁ ତ ଅନ୍ତ ସେ ମୋହର । ୩ ।

ଭବଗଣି କହେ ଗୋସ୍ୱ—କଥାନ ଯାଇଛୁ ସବ
ଓଜାଣି ଆସିବ କାହ୍ନୁଁ ବହିଗଲା ନୀର ଲୋ,
ସଖି, ତୁ ମନରେ ବଗୁର । ୪ ।

———

( ୮୧ )

ବାଟ ଅନାଇଁ ତୋର ଅରେ ସୁନାଗୋସ୍ୱା,
ମୋର ବଢିଲା ତ ଗୃନ୍ଦମୀରିତ, ଅରେ ସଖ୍ୟ,
ନଦେଲୁ ଧରା, ଫାଟେ ଛାତି, ଅରେ ସଖ୍ୟ । ୦ ।

ଚୈତ୍ର ବସନ୍ତ ଗୃହିଁ ଗୃହିଁ ଗଲ ଫେର
ସାଜ ମାଜିଲି ମୁଁ ଯେ ନିଅଳୀମାଳ
ହାୟ ସଖି, ସେତ ଯାଏ ଝର
ଜୀବନ ଯାଏ ସିନା ଛତେ ଝୁରି ଝୁରି ।
ମୋର, କି ଦୋଷେ କାହ୍ନା ଭୁଲେ, ମାତି ଅରେ ସହୁ,
ଭୁଲିଲୁ ସତେ ତୁ ଯେ ସାଥୀ ଅଂରେ । ୨ ।

———

( ୮୨ )

ଝଳ ମୁଣି ଝାଡ଼ି କି ମିଳବ ବାବୁ,
ଭଲ ଭଲ କଥା ଛାଡ଼,
ଅଳ କରିବାକୁ ବେଳ ନାହିଁ ଆଜ
ଏବେ ବଳ ପଡ଼ିଲଣି କାଳ ରେ
ମେଘୁ ଖସିବ ଗାଳ ।
ପେଟ ପୁରାଇବୁ ତୁ ନ ଭାଲ ରେ । ୦ ।

ସଭଏଁ ବୋଇଲ ଚକାସନ ପାର
ଠେକାଭଡ଼ି ହେବ ବାବୁ,
ଛମ ଅରଜନ କଡ଼ି ମୁଠାକ
(ତାକୁ) ବସି ଚୈବାଇବ ସବୁ ରେ,
ପେଟ ତାତକି ସହ,
କାହିଁ ଉପାୟ ଖଞ୍ଜୁଚ କହ ରେ । ୧ ।

ପଢ଼ୁଅ ନ କଲେ ଜଟିଅ, କାଳକ
ପେଟେ ଓଦା କନା ଦେବ,
ଲକ୍ଷେ ଅରଜିଲେ ପଟକୁ ନାଅଣ୍ଟେ
ଲେଢ଼ିଗୁଡ଼ କହୁଣୀକ ଯିବ ରେ,
ମାଟି ଭରସା କର,
କାଢ଼ିଦେବ ସେ ସୁନା ମୋହର । ୨ ।

ଖେତ ଯୋତ କର ପୂର୍ବ ପୁରୁଷେ
ସୁଖେ ମାରିନେଲେ ଦିନ
ତାକୁ ନାକ ଟେକି ବାବୁ ବନି ଏବେ
ମିଛେ ସିନା ହୁଅ ହୀନମାନ ରେ,
ମାଟି ମାଆ ସମାନ,
ତାକୁ କର ଅତି ସନମାନ । ୩ ।

---

( ୮୩ )

କିଶୋଜନରେ ମାନ କରନା,
ମଞ୍ଜନାବତୀ ମନେ ଧରନା । ୦ ।
ଉଇଁବେ ଶରଦ ଜହ୍ନ ଗଗନ କୋଣେ,
ମଳୟ ବହିବ ନବ କଦମ୍ବ ବଣେ ।
ପରଶ ଯିବ ଧନ-ପରଶମିତ ଯୌନ
ଡ଼ାକିବ ସଧା, ହର-ବାଧା, ମନମୋହନ ।
ବନ୍ଧୁ ଅଟରେ—
ସେ କି ମାନିବ ସତେ ଭା'ମନା ? । ୧ ।

(ଢ଼ୁହା) ଏତକି ବେଳକୁ ମୂରଲୀ ଡାକିଲା
କୁଞ୍ଜକାନନ ଭରି,
ସଜନୀ କହିଲା—ଡରୁଚ ନକରି
ଚଳ ଚଞ୍ଚଳ ଗୋସ୍ୱା ।
ମରାଳ-ହରା ଛା' ଗତି, ପାଦେ ନୂପୁର,
ଲଜେ ଲଜେ ଚଳେ ଧନୀ କୁଞ୍ଜ କୁଟୀର ।
ତନୁ ବରନ ଚୁହିଁ—କେତକୀ ଚେତା ନାହିଁ
ପଣ୍ଟରେ କବରୀବନ୍ଧ-କାଏ ଥିଲା ବନାଇଁ,
କିଶୋରୀ ରେ—
ସଂସାର ଶିର-ସାର-ଶୋଭନା ।୨।

---

( ୮୪ )

ଚକା ଚୁଲେ ଦିନରାତି,
କାନ ଶୁଣେ ଚକା ଘିର ଘେର ଘୁରେ,
ମେଲି ଅଖି ଦେଖେ ନାଇ । ୦ ।

ଘୂମାଇଁ ପଡ଼ିଛି ଚଲା ପଠ ଚକା
ଘାରିଛି ନଗମ ଘୁମ,
ଉପରେ ପଥର ଚକା ଫାଳ ଘୁରେ
ନାହିଁ ତାର ଘୁରୁଘମ ।
ଚକା ଖିଲ ବସି-ଦେଖୁଥାଏ ହସି
କେତେ ଫାଟିଲାଣି ଗୁଣ୍ଡ । ୧ ।

ମନର ଭାବନା-କାମନା-ବାସନା
କଳ୍ପନା ଫଳ ଯେତେ,
କାଦା ପଥର ସେ, ମାୟା ନାହିଁ ତାର
କାନ୍ଦିଲେ କି ହେବ କେତେ ?
ଆଖି ପିଛୁଳାକେ-ଚୂନାକରେ ସେ ତ
କାଳର ସାରଥୀ ଥାଏ । ୨ ।

———

( ୮୫ )

ବରଷଣା, ତୋର ଗୁଣ୍‌ଗଣି ଗୁଣି
ରାତି ତ ଅସରା ହେଲା,
କୋଳେ ତ କଳା ଘନ ଘେରି ଘନ-
ଗଗନ ଅଚ୍ଛନ୍ନ କଲା ରେ ।
ଧନ, ରହିଲୁ ଦୂରେ,
ତୋତେ ମୂର୍ଚ୍ଛୁ ପାରିବି କି ରେ ? । ୧ ।

ବାଜୁ ଘନଘନ-ଦେଖି ଛନଛନ
ମନ ମୋର ଜୀବଧନ,
କଦମ୍ବ ଫୁଟି ମୋ ଦମ୍ଭ ସାରିଲଣି
ମନେ ପଡ଼ୁଛି ମାଳତୀ ବନ ଲୋ—
ଅଜ କାହା ପାଇଁକି,
ହାର ଗୁନ୍ଥି ମୁଁ ଥିବ ଗୁହିଁ କି ଲୋ । ୨ ।

ଭେକ ମକମକ ଡାହୁକର ଡାକ
ଝିଙ୍କାରି ସ୍ୱର ମଧୁରୀ,
ଚୌପି ମେଘ ମିଶି ଭଗାର ସଭଏଁ
(ମୋର) ମରମ ଦେଲେ ବିଦାରି ଲୋ-
ସତେ ନବ ନବୀନା,
କାହିଁ ବଞ୍ଚିବ ଆଜ ତୋ ବିନା ରେ ।୩।
ବିପତ୍ତି ହେଲଣି ଘଡ଼ଘଡ଼ି ସେ ତ
ଘଡ଼ଘଡ଼ି ଗୁଡ଼େ ବଢ଼ି,
ଅବଳା ସାଧିଲ ବିନା ଅପରାଧେ
(ମୋତେ) ରହି ଲୁଚ ହୃଦେ ଗୁଡ଼ି ଲୋ—
ମୋର ଯାଏ ଜୀବନ,
ଧାନେ ଦୟା ନକଲୁ ତୁ ଧନ ରେ ।୪।
ସପନେ ଆସି ତୁ ଗୋପନେ କେଣିକି
ଯାଉ ରେ ପରାଣ ସହୁ,
ନିଦ ଭାଙ୍ଗି ଅଖି ମେଲି ଅନାଇଲେ
(କାହିଁ) ଲୁଚିଯାଉ ଗୃହମୂହିଁ ଲୋ—
ସୁନା ବଦନା ମୋର,
ତୋର ଭଙ୍ଗୀନ ଯାଏ ପାଶୋର ଲୋ ।୫।
ଯେତେ ଦୂରେ ଯହିଁ ଥିଲେ ଟର ଛଇଲା !
ଭବଚନ୍ଦ୍ର ପରି ତୋର,
ସଁପି ତ ଦେଇଛି ସାରା ଜୀବନଟା।
(ଥରେ) ବୁକୁଚିର ଦେଖ ମୋର ଲୋ—
ଧନ, ପର ନକର,
ରଖି ନବସ ନାଗରୀବର ଲୋ ।୬।

---

( ୮୭ )

ବଚ୍ଛେଣୀ ବରଜ ଗୁଆଳ
ପୀରତ୍ତ ଡୋରରେ ବନ୍ଧା,—
ଦେଲ ବନମାଳ ହେ ।୦।

ରଜାପୁଅ ପରି କାହ୍ନୁ—ପାଶୋର ଦେଲ କା ମନୁ
ଯମୁନା ପୁଲିନେ ଧନ-
ଗଲ୍ମ ଭଲ ଭଲ ହେ ।୧।

ଘରେ ନ ରହିଲ ମନ—ଲେଉ ହେଲ ମଧୁବନ,
ରାଧିକାରେ ଙ୍କୁର ପରି—
ସାଧିଲ ମୁରଲୀ ହେ । ୨ ।

ସରଛ ମାଲଠୀ ପଣେ—ଭ୍ରମପର ନାହିଁ ଜଣେ
ଦରଜେ ନାଗରୀ ବାଜେ
ଖଣ୍ଡେ ଶଠ ବୋଲି ହେ ।୩।

ଭବଚନ୍ଦ୍ର ଭହେ ଶ୍ୟାମ—ଗୁଆଳ ରାଧିକା ନାମ,
ସାଧକର ଧନରତ୍ନ,
ଭଲ ଜପାମାଳ ହେ । ୪ ।

---

( ୮୭ )

ଗୋହରି ଦାଣ୍ଡରେ ପାଣି ଲୋ,
ଗୋହରି ଦାଣ୍ଡରେ ପାଣି ।
ଗହଳ ଶୁଭୁଛି ଗମ୍ଭୀର ମାଳେ
(ଧନ) ପାଣିହେଲା ଆଣୁ ଆଣି ଓ
କଳା କାଇଁଅମାଳ
ଆଉ ମଠମଠ କରନା ।୧।

କିଅସ୍ଥରେ ମୀନ ମଙ୍ଗ ଲୋ,
କିଆସ୍ଥରେ ମୀନ ମଙ୍ଗ ।
ସାଧବାଣୀ ବୋହୂ ପାଟ ଚିହ୍ନିଲା
ବନେ 'ରଙ୍ଗପୁଅ' ଡାକଦେଲା ଓ
କଳା କାଇଁଅମାଳ
ଆଉ ମଠ ମଠ କରନା ।୨।

ହୁଡ଼ ମୁଣ୍ଡେ କିଅରୁଦା ଲୋ,
ହୁଡ଼ମୁଣ୍ଡେ କିଅରୁଦା
ଘର ବାହୁଡ଼ଣି ଅଣିବୁ ଫୁଲ
ଜୁଡ଼ା ବାନ୍ଧି ରଖିଥିବ ଅଧା ଓ
କଳା କାଇଁଅମାଳ,
ଆଉ ମଠ ମଠ କରନା ।୩।

ଡାହୁକ ଡାକିଲା ବଣେ ଲୋ,
ଡାହୁକ ଡାକିଲା ବଣେ,

ପାଶୋର ନଦେବୁ ମନରୁ ଧନ,
ଅନା ବଜୁଳି ମାରିଲା ଘନେ ଭ
କଳା କାଇଁମାଳି
ଅଜ ମଠ ମଠ କରନା ।୪।

ଫୁଟିଲା କଦମ୍ବ ଫୁଲ ଲୋ,
ଫୁଟିଲା କଦମ୍ବ ଫୁଲ
ଶୀତେଇ ଜଟିଲା ଦଣ୍ଡଠା ମୋର
(ଧନ) ନ ବୁଝିଲୁ ମନ ମୂଳ ଭ
କଳା କାଇଁ ମାଳି
ଅଜ ମଠ ମଠ କରନା । ୫ ।

ହୁଙ୍କାରେ ଫୁଟିଲା ଛତୁ ଲୋ
ହୁଙ୍କାରେ ଫୁଟିଲା ଛତୁ
ଚକ୍‌କଣି କାଳିଆ ଘୁଞ୍ଚିଲା ଘୁଡ଼
(କେତେ) ରସରଙ୍ଗେ ସତେ ମାତୁ ରେ
କଳା କାଇଁମାଳି
ଅଜ ମଠ ମଠ କରନା ।୬।

ବାଲୁଙ୍ଗା ଧାନର ଚୁଡ଼ା ଲୋ
ବାଲୁଙ୍ଗା ଧାନର ଚୁଡ଼ା,
ଗଢଣ କ୍ଷୀରରେ ଭସାଇ ଦେବ
ଦଣ୍ଡେ ଅଜ ହୁଅ ଛୁଡ଼ାରେ
କଳା କାଇଁମାଳି
ଅଜ ମଠ ମଠ କରନା ।୭।

---

( ୮୮ )

ନେଳିଅ ଦରିଆ ପାଣି
ପୂନେଇଁ ରାତି ଜକାଣି,
ଛରଛରେ କେ ସତେ ଅନାଏଁ ଲୋ—
ସତେ ସରଗ ଧନମଣି ।୦।

ଅସମ୍ବରଣୀ ଯେତେ ତରି,
ମାରିଲେଣି ଅଙ୍ଗ ଠରି
ଧନୀ ଦୁଃଖ କଳନା ନଯାଏ ଗୋ
ଛନଛନ ମନ ଚମକାଏ ।୧।

ଘେରୁଲ ଟେଣ୍ଟୋଇ ଥିଲ
ଦେହଇଠି ବୋଲି ଭଦ୍ଧଲ
ଫେର ଗୃହିଁ ଶ୍ରୀମୁଖ ଝୁଖାଏ ଲୋ,
ଭେଜ ଡଟଲ ଭନୁଟି ଛପାଏ ।୨।

ଦରିଆ ସେ ବଡ଼ଜନ
ସମ୍ଭୁଜଲ ସଖୀ ମନ
ମଥା ଢୋଳି ଚଉଦ୍ଧରେ ଗୃହେଁ ଲୋ,
ଧନ ଭୁଲେ ମନ ଡ ମିଳାଏ ।୩।

———

( ୮୯ )

ଯା’ ଲଗି କୁଞ୍ଜେ ଝୁରୁଛୁ ବସି,
ସେଇ ବନ୍ଧୁ ଏ ତୋର ଅଙ୍କ—
ଦୂର ପରବାସୀ ଯେ ।୦।

ଗଞ୍ଜଣା ସହିଲୁ କେତେ ଏକା ତା’ର ପାଇଁ,
କଳଙ୍କିନୀ ଗ୍ଲାଇ ବୋଲି ନାଗରୀ ବାଜଇ ।
ସପନେ ତାର ଛାଇ, ଚମକି ଗୁହାଁ, ପାହେ ସାରା ନିଶି ଲୋ ।୧।

ବସନ୍ତେ ସଜାଉ ଥାଉ ସଜ ମଲ୍ଲୀମାଳ
ବରଷା ରାତିରେ କହୁ ବଜୁଳି ତୋ କାଳ,
ଶରତ ଚନ୍ଦ୍ର ଦେଖି, ଦୁଃଖେ ସଖି, ଲୋଡ଼ୁ ଥାଉଁ ବଂଶୀ ଲୋ ।୨।

ସଞ୍ଜେ ତୁ କଦମ୍ବ ମୂଳେ କା’ପଥ ଅନାଉଁ,
ତୋ’ ନୟନ ନୀରଧାରେ ଯମୁନା ବନାଉଁ ।
ଫୁଟିଲେ ଚନ୍ଦ୍ର ଭାସି, ନାଚେ ଅସି, ମନେ କଳାଶଶି ଲୋ ।୩।

କା’ଲାଗି ଚନ୍ଦନ ଚୁଆ, କା’ଲାଗି ବଉଳ
କା’ଲାଗି ଏ ନୀଳଶାଢ଼ୀ କୁଞ୍ଜ କୋଣେ ଠିଆ,
ନୂପୁର ଯା’ରପାଇଁ, ସେତ ନାହିଁ ସବୁ ହେଲା ବାସି ଲୋ ।୪।

———

( ୯୦ )

ଗ୍ରୀଷମ ଏ ଗୀର ସମ
ନାହିଁ ତ ପାଶେ ଜୀବ ଧନ ରେ ।୦।

ଶୁଣ୍ଠା ଅମ୍ବଡାଳେ ବସି,
ଡାକଇଲ ସତେ ଉଦାସି,
ବାସି ହେଲ ସଞ୍ଜ ଯଉବନରେ ।୧।

ଘମଗମ ବହେ ଝାଳ
ଫାଟିଲା ସତେ କପାଳ ।
ବୃଥା ତ କର୍ପୂର ଚନ୍ଦନ ରେ । ୨ ।

ଶ୍ୟାମ ଗଲେ ମଧୁପୁରୀ,
କରୁ ମୋର ମନଚୋରି ।
ଏଡ଼ିକା ଦଗାଦିଆ ମନ ରେ ।୩।

କବିଚନ୍ଦ୍ର କହେ ସହି,
ମିଛେ ସିନା ହେଲୁ ବାଇ
ନାଗରର ପଣ ଥା ନାମ ରେ ।୪।

---

( ୯୧ )

ଫେରି ଭ ଗଲା ମିତ
ନ କହିଲି ପଦେ ହେଲେ କଥା,
ଆଖିର ଲୁହ ଧାର
କହିଗଲା ଯେତେ ଯେତେ ବ୍ୟଥା ରେ ।୦।

ଭମ କଜଳ ଧାର-ଚଳାଇ ଲେଖନୀ ଧାର
ଲେଖିଗଲି ମନ କଥା ଭାର ।
ଅଫୁଟା ମୁହଁ ତଳେ—ଫୁଟିଗଲି ବଳେ ବଳେ
ମୋ ଲାଗି ସେ ଫୁଲ ମଉବାର ।
ଦଂହୋପା ଲୁହ ଧାର ଫେରିବାର
ଧୋଇଦେଲି ମଥା ରେ । ୧ ।

ବଣ ହରିଣୀ ପରି—ନ ଦେଲି ସତେ ସେ ଧରି
ଗୁଳିଗଲି ବନ ପଥେ ଧାଇଁ,
ପାଦର ବଳା ଭାର—ଢାକେ ଥରକୁ ଥର
ଶବଦେ ହେଲି ମନମରି ।
ଲାଜରେ ଗଲି ସରି, ସୁନାଗୋରି
ଭାଳି ଅଖିପତା ରେ । ୨ ।

———

( ୯୬ )

ଅନା ଲୋ, ପରାଣ ମିତ ।
ଖସି ପଳେଇଲା ବାଘୁଆ ଶୀତ,
(ଏବେ) ବହିଲା ଚୈତ୍ର ବସନ୍ତ ।୦।

ଆମ୍ବ ଗଛର ଧାଡ଼ି ।
ନାଳିଆ ପତର ଆସୁଛି ବଢ଼ି
ଖୋଷିଲା ବଉଳ କଢ଼ି ।୧।

ହସିଲାଣି ବଣମଲ୍ଲୀ ।
କୋଉ ରାଇଜରୁ ଆଇଲା ଅଳି,
ଗୁଣୁଗାଇ କଲା ଅଳି ଲୋ ।୨।

କୋଇଲିର ଦେଖା ନାହିଁ ।
ମଳୟ ଯାଉଛି ଖବର ନେଇ,
ଆସିବ ବାଟେଣା ପାଇ ଲୋ ।୩।

ଶୁଖିଲା ବାଉଁଶ ବୁଦା ।
ମୂଳରେ ପାଚିଲା ପତର ଗଦା,
ଗୋଠା ଦହ ଛାର ପଦା ।୪।

ବଇଁଚ ବାରିଲା ଅଗ ।
ମଥାରେ ନାଇଲା ନାଲିଆ ଦାଗ,
(ଭାଉ) ବସନ୍ତରେ ଅନୁରାଗ । ୫ ।

ମହକିଲ ମହୁବାସ ।
ମହୁମାଛି ପଲ୍ ଅସିଲେ ପାଶ,
ଫୁଲ ମହୁ କର ଅଶ । ୬ ।

ଉଷି ବସନାଇଁ ଆଉ ।
ବସ ଗୃନ୍ଦସ୍ତ ମଣ୍ଡଳେ ପାହୁ,
କାହିଁକି ମୁହଁ ଶୁଖାଉ । ୭ ।

———

( ଏକା )

ପୁରୁଷ — ଗୃହିଲ୍ଲ ନାହିଁ ଫେର,
ଗୃନ୍ଦଗୋସ୍ତି, ଗୃନ୍ଦ ଗଲ୍ଲ ଗୃଲ୍ ।
ସ୍ତ୍ରୀ—ଅକାଳେ ସକାଳେ ତୁ ଭେଟି ମୋରେ,
ହେଲୁ ଆଖି ବାଲି ରେ ।୦।

ପୁରୁଷ—ବାଟ ଅନାଇଁ ତୋର,
ନିଦଭଙ୍ଗା ଅଖି ମୋର,
ଝୁରି ଝରେ ଝର ଝର ଧାର ।୧।

ସ୍ତ୍ରୀ—ପାଣିରେ ପକାଇ ସର,
ମାଠି କଥା କହୁ ଭଲ,
ଦୂର ହେଲେ କରୁ ସାଉପର ।
ଉଭୟ—ଜାଣି କି ନାହୁଁ ସତେ ।
ଯେ ଯାହାର, ସେ ତାହାର ବୋଲି ରେ ।୨।

ପୁରୁଷ—କୋଇଲି ରହ ରହ,
ଭଟେ ଅନାଁ ମୋରେ ଚାହ ।
ପାଶେ ତୁ ଥାଜ ଥାଜ ସହ । ୩ ।

ସ୍ତ୍ରୀ—ତୋ' ପରି ଦଗାଦାର,
ନାହିଁ ଆରେ ମନ ଚୋର,
ଚଉଦ ଭୁବନେ ଆନ କେହ ।
ଉଭୟ—କେତେ ରଖିଛୁ ଧନ
ଛେଜ ମାନ,
ମୋହ ଘେଣି ଦେଲୁ ରେ । ୪ ।

———

( ୯୪ )

ଜନ୍ମ ତ ମନ୍ଦ ଲଲ, ଭବି ନ ମଜଲଲା ।
ଫସର ଫାଟେ ରାତ, ନାହିଁ ପୀରତ ସାଥୀ,
ଫୁଲ ଶେଜ ଭିଜିଲା । ୦ ।

କଥା ଦେଇ ଦଗାଦଅ-ରାତ ଜଗାଇଲ,
ଘୃତ ଜଳାଇଲ ।
ଅଶା ମୋର—ତା'ର ଲଗି, ଅଶାରେ ବହିଲ
ନାଗର ନଇଲ,
ଯଉବନ ବାଉଲ । ୧ ।

କହିବୁ ଲୋ ସହି ତାକୁ ମୋ ପ୍ରାଣ ରହିଲା,
ମୋ ପ୍ରାଣ ରହିଲା ।
କେତେ କାଳ ଲାଗି ସତେ, କି କଥା ନୋହିଲା,
ନାଟ ଲଗାଇଲା,
ଫେର ତ ନ ଗୃହିଁଲା । ୨ ।

———

( ୯୪ )

ଶୁଣ କାହାଣୀ ହୋ, ଶୁଣ କାହାଣୀ
ଆଈ ମାʼ କୁହା କାହାଣୀ । ୦ ।

ସେଦିନ ସଞ୍ଜ ବେଳେ—ଚଉର ମୂଳେ,
ବୁଢ଼ୀ ମାଆ ଥାଏ ବସି,
ନେଳିଆ ମେଘ—କୋଣରେ ଅଗ
ଛଇଟିଏ ଦେଲା ହସି ।
ଜାଳିଲା ସଞ୍ଜବତୀ —କହିଲା ବୃନ୍ଦାବତୀ
ଜୁହାର ଠାକୁରାଣୀ ।୧।

ଉମା, ଗଉରୀ—ଟୋକୀ, ସଉରୀ
ସଭିଏଁ ବାନ୍ଧ ମେଳି,
ହସି ହସିକା, ଢେଇଁ ଢେଇଁକା,
ବସିଲେ ପୁଚ ଖେଳି ।
ପୁନେଇଁ ଚାନ୍ଦ ଆସି—ମୁରୁକି ହସା ହସି
ସରଗେ ବସିଲାଣି । ୨ ।

ବୁଢ଼ା ମାଅକୁ, ନାତ ନାତୁଣୀ
ଘେରିଲେ ଠଣା ଠଣି,
ଠୋ ଠୋ ହସି, ବୁଢ଼ୀ କହିଲା,
ପାଟିରୁ ବହେ ପାଣି ।
କାଟି ପକାଇଲି ଲହୁଣୀ ।
ମୋ ସାଙ୍ଗେ ଯିଏ, ପୁଚି ଖେଳିବ,
ମାରି ଦେବି ଢ କହୁଣି । ୩ ।

---

( ୯୭ )

ଗନ୍ଧସି ଝାଲର ମଦରଙ୍ଗା,
ସେ ଫୁଲ ଫୁଟେଇ ରଙ୍ଗା ରଙ୍ଗା ।
ତାକୁ ଖାଇଗଲା ମଇଁଷି ।
ଦଉଡ଼ି ଗୁଲ ରେ ଗଉଡ଼ି ପିଲେ,
ବଜେଇ ବଜେଇ ବଇଁଶୀ । ୦ ।

ରୁଅକୁ ଗଛର ରୁଅ ଝଡ଼ି,
ଟୋପି ବରଷାରେ ଗଲା ବଢ଼ି,
ଧୁଡ଼ି ଡେଇଁଗଲା ପାଣି ଘ ।
ଉତ୍କଳ ସୁନ୍ଦର ନାଅ ଲୋ ନାନି,
ଡାକିଲା ବେଙ୍ଗୁଲୀ ରାଣୀ ଘ । ୧ ।

ଝୁରୁସ ମୁଣ୍ଡିଆ ବୁଢ଼ାବର,
ନୂଆ ବାନ୍ଧଥିଲ ବସାଘର ।
କୋଇଲ ତରଙ୍କା ଅଇଲ୍କ ।
ଲୁଆ ଉମ୍ବତକ ତଳକୁ ପକାଇ
ଆପଣାର ଉମ୍ବ ଥୋଇଲ୍ଲ । ୨ ।

ଭୁଳ ହୁଅ କଳା କୋଇଲି ରେ
ଏତେ କର ତୋତେ ବୋଇଲି ରେ ।
ବୁଢ଼ା ବେଙ୍ଗ ଘୁଡ଼େ ରଡ଼ି,
ରଡ଼ି ଶୁଣି ତାର ଟସ୍‌ଖେ ଏଥର—
ଖୁସିରେ ଯାଆନ୍ତି ଗଡ଼ି ।୩।

ତୋଟା ଗହଳରେ ଜୁଳୁଜୁଳା,
ଜଆଁସି ରାତିରେ ଜାଳେ ହୁଳା,
ଜହ୍ନ ନାହିଁ ବୋଲି ବଢ଼ାଇ ।
ମନେ ମନେ କହେ, ଏଥର ଜହ୍ନର
ଗୁଡର ଦେଲ ସେ ଛଡ଼ାଇ ।୪।

ଶଙ୍ଖଚିଲ୍ ଉଡ଼େ ଚେକାମାର,
ଅସରପା ତାକୁ ଦେଖି କର,
ବଗୁରଲି ବସି ମନେ ମନେ ।
ଡେଣା ଅଛୁ ମୋର ମେଘରେ ଉଡ଼ିବି,
ଚଢ଼େଇ ଭିତରେ ମୁଁ ଜଣେ । ୫ ।

———

( ୯୭ )

ଆସ ଜୀବନ ଧନ ମୋର ପଖାଳ କଂସା,
ସଙ୍ଗମରେ ତୋ ବନ୍ଧୁନେ ଭୁଲିଲି ହଂସା ॥ ୦ ॥

ବହିଲଣି ଅନାଁ ସଖୀ ଝାଞ୍ଜି ପବନ,
ଅଠା ପାଚିଗଲା ତୃଷ୍ଣ ଯାଏ ଜୀବନ ।
ତୋ ବିନେ ପଖାଳ ଗୋ—ଫାଟିଲା କପାଳ ଗୋ,
ତୋରାଣୀ ସାଥିରେ ମିଶି ହର ମୋ ତୃଷା ।୧।

ସଙ୍ଗା ଠାକୁରାଣୀ ପିଠା ଖିରୁଆ ରାଣୀ
ତୋ ଲାଗି ନାଆଁରେ ସତୀ ଫାସ ଦେଲାଣି ।
ପିଆଜ ଥିବ ଡରେ—ଲୁଣ ଛଡ଼ାଇ ମରେ
ମରିଚ କହୁଚି ମୋତେ ତୋ ଭୁଲେ ମିଶା ।୨।

ହଳ ଘୋଳ ଦହି, ଅମ୍ବ ଛେଚୁ ସହିତେ
ଫୁଲ ହେଉଥିବେ ସତେ ଦେବତା ଯେତେ ।
ବଡ଼ି ଚଟିଣି ଥାଇ—ଗୁମାନେ ରହେ ରହି
ଅନାମନା ଶାଗ କହେ ଚୁଲିରେ ବସା ।୩।

ଓଡ଼ିଆ ଜୀବନ ତୁଅ ଶାଗ ପଖାଳ,
ଜଗନ୍ନାଥ ରସିଖାଏ, ମନେ ଭୁ ଭାଳ
ରୁଖି ନାହିଁ ଯେ ଥରେ—ଧିକ ତା ଜନମରେ
ନଶିଷ ଯାକରେ ସେ ତ ଅଣପୁରୁଷା ।୪।

———

ଭ୍ରମର—ଏଇ ଭରା ଗୃନ୍ଦ ରାତି,
ଆସ ଲୋ ପରାଣ ସାଥି
ରସ ରଙ୍ଗରେ ମାତି
ଯାଉ ସୁଖେ ବାତି
ଅରେ ସାଥି,—ସାଥି, ମିଶାଇ ଦେବା ଗୀତ ଗୀତ ।୧।

ଫୁଲ—ଧୂଅଁ ଚିକ୍କଣ କଳା,
ଅନ୍ତରେ ଗରଳ ଢୋଳା,
ଅଉ ତୁ ନ ଭୁଲା
ଦୂରେ ପଳା ପଳା
ଧୂର୍ତ୍ତରେ, ଅଉ ତୁ ନ ବଳା ।୨।

ଭ୍ରମର—ଝୁରି ତୋରେ ଲୋ ସହି,
ଏ ନୟନେ ନିଦ ନାହିଁ
ଦୂର ବନରୁ ମୁହିଁ
ତୋ'ର ଗୁଣ ଗାଇ,
ଅରେ ସହି, ସହି—ଅସିଛୁ ପରା ଧାଇଁ ଧାଇଁ ।୩।

ଫୁଲ—କପଟ ଦଗାଦିଆ,
ତୁ ପରା ପରାଣ ନିଆ ।
କଲାଜ ନାଗ ହିଆ,
ଜାଳି ନିତ ନିଆଁ ।
ଫେର ଯାଅ—ଯାଅ ।
ହଟ, ନୂଆ ନୂଆ କରନା ।୪।

———

( ୯୯ )

ଚଇତ ରାତିରେ ମହୁଲ ଗନ୍ଧରେ
ଶୋଇଥିଲା ଗୋଠା ଜହ୍ନ,
ଚନ୍ଦୁରୀ ଛଇଳା ଢୋ ଛବ ନାଚଲା
ମୋର ମନ ତଳେ ଘନଘନ ଲୋ,
ଗୋରୀ ଚନ୍ଦ୍ରମାମୁହିଁ,
ନିଦଭୁଲା ରାତି ସରୁ ନାହିଁ ।୧।

ଗୁରୁ ଗୀରଷମ ହେଇ ସଜନୀ ଲୋ,
ଫାଟି ତ ଯାଉଛି ଛାତି,
ଅଖି ଅଗେ ଢସେ କାମ ପରି କି ସେ
(ବସି) ହସି ହସି ଘଷେ କାତି ଲୋ,
ପୁଣି ଦହିଁ ବାଅ,
ମୋର ଉଡ଼ାଇ ନେଉଛି ସାହା ।୨।

ପାଠ ପରବକୁ ବାଠ ରୁହୁଁ ଥିଲି
ଭଣ୍ଟେ ଦେଇଥିଲୁ ପରା,
ମାଅ ରୁଚିକେଇ ପାଅ ଛୁଇଁ ସଙ୍ଗ !
(ସତେ) ହେଲା କି ମନ ପାଶୋରା ଲୋ,
ଧନ ବାଠ ଅନାଇଁ,
ନିତି ବଉଳ ହାର ଗୁନ୍ଥଇଁ ।୩।

( ୧୦୦ )

ଧିନାକ୍ ଧାଏ ନା ନା, ତିନାକ୍ ଧାଏ ନା ନା
ଧିନାକ୍ ନାଧିନ୍ ବାଜେ ମାଦଳ ଧାଏ ନା ନା ।୦।
ଏଇ ରସିଆ ଚନ୍ଦ ଅସି-କୁଞ୍ଜ ତଳେ ରହେଁ,
ଏଇ ମହୁଆ ଗନ୍ଧ ଭରା-ସଞ୍ଜବେଳେ ବହେ,
କଣ୍ଠଭରି ଏଇ ବେଳାରେ ବିରହ ଗୀତ ଗା’ନା ।୧।
ତୁଇ ତ ମୋର ପରାଣଧନ, ତୁଇ ମୋର ଜୀବନ
ତୁଇ ନହେଲେ ଶୂନ’ର ସିନା ସାରା ଯଉବନ,
ମୁରୁକି ହସି ଆ’ଲୋ ରସି, କରନା ଧଣୀ ମନା ।୨।
ମଲ୍ଲୀମାଳା ବାସି ହେଲା-ବଉଳ ଗଛ ଶୁଖି,
ଭଅଁର ଅସି ବାହୁଡ଼ିଗଲା-ତୋରେ ଡାକି ଡାକି,
ପାହିଯିବଟି ଝୁଆତ ରାତି-କୋଇଲି ଡାକେ କାନିଁ ।
ମୋ ରାଣୀ ଲୋ ପରାଣି ମିତ, ତୁହି ମାରତୁ ଯା’ନା ।୩।

———

( ୧୦୧ )

ପୁରୁଷ—ଅଷାଢ଼ ଅସିଲା, ଘନ ବରଷିଲା
ଚମକିଲା ଘଡ଼ ଘଡ଼
ସ୍ତ୍ରୀ—ଛଇଳ ନାଗର ପରବାସ ଗଲା
(ସତେ) ଯାଉଛି ତ ଜୀବ ଛାଡ଼ି,
ପୁରୁଷ—ଲୋ, ବାମ ହୋଇଲା ବିଧି ।
ତୋତେ ଛାଡ଼ି ଯା’ବହିଲି ସହି ଲୋ ।୧।

ସ୍ତ୍ରୀ—ନେଳିଅ ମେଘର, କୋଳରେ ଗୋଳ୍ପାଇ
ବଜୁ ମାରୁଥାଏ ଅଗ୍ନି
ପୁରୁଷ—ଘଡ଼ିଏ ହେଲେ ଛୁ ପାଶୋର ନ ଗଲି
(ମୋର) ଦଣ୍ଡାଗଧାର ସାକ୍ଷୀ ଲୋ,
ସ୍ତ୍ରୀ—ସେ ତ ଭ୍ରମର ଜାତି,
ବାର ଫୁଲରେ ତାର ପୀରତି ରେ ।୨।

ପୁରୁଷ—ଛଇଲା ରେ, ତୋର ପଡ଼ୁଥିବ ମନେ
ଘନ ଗତ ମନ ଦିଅ,
ସ୍ତ୍ରୀ—କାନକୁହା କଥା ଶୁଣି ଗୁଣମଣି,
(ସତେ) ପଥର କଲ କି ହିଅ,
ପୁରୁଷ—ଛେ ଧନ ମନେ କରୁଛ ।
ଯେ ଯାହାର ପର ସେ ତାହାର ।୩।

———

( ୧୦୨ )

ଗୋରୀ ନୟନରେ, ତେରଛ କୋଣରେ
କେ ଦେଲା କଜଳ ଗାର ଲୋ,
ସୁନା ତନୁ ସଖୀ, ଗଳାରେ ଝୁଲାଇ
କେ ଦେଲା ସୁନାର ହାର ଲୋ ।୧।

ଫୁଟା ଫୁଲ ପରି, ଗୋରୀ ମୁଖ ତୋର
ସର ହେଉ ନାଏ ଭାର ଲୋ,
ସାଉନ୍ତି ଦେଉଛୁ, କାଏ ଲୋ ନାଗରୀ
ଦରହସା ଭର ଭର ଲୋ ।୨।

ଯାଉ ଯମୁନାକୁ, ନୀର ଅଣିବାକୁ
ଗୃଳ ଢେଙ୍କେଠ ଧୀର ଧୀର ଲୋ,
ଛାଳି ଭେଦେ କଳା, ତୋ ଲଗି ବାଉଳା
ବଇଁଶି ମାନିଲା ହାର ଲୋ ।୩।

---

( ୧୦୮ )

ଶରଦ ଚନ୍ଦ୍ରମା ରାତି, ନାହିଁ ଲୋ ପୀରତି ସାଥି
ଦେଖାଦେଇ ଚଲ୍ଲ ମଧୁପୁରେ ଲୋ ।
ଭୁଲାଇଲା ବଇଁଶୀର ସ୍ୱରେ
ସଖି, ନିଦ ହର ଆଖି ମୋର ଝୁରେ ।୧।

ଯାଇ ଲୋ ମଥୁରା ପୁରେ, କଂସ ସମୁଜାଇ ଘା'ରେ
ଥାଉ ନଚେ କୁବୁଜାର ହୋଇ ଲୋ,
ଛୁଟି ମାଦ ଯାଉ ଗୋପଗୋଈ
ସଖି, ଏ ବିରହ ସହଣା ନ ଯାଇ ।୨।

ରସ ଅଖି ଲୁହ ଧାର, ଝଲେ ଗୁଳ ଖେଳେ ଛାର
ଗୃଢ ରଚେ ପ୍ରେମ କଳା ଗୃଢ ଲୋ,
ନିତି ସଙ୍ଗେ ଅସି ସାଥେ ବାଦ
ସଖି, ବିଡମ୍ବା ହେଲା ପରମାଦ ।୩।

ଢାଳୀ ବୋଲେ ବିନୋଦିନୀ, ମିଛେ ହେଲୁ ପାଗଳିନୀ
ସବୁରି ସେ ଶ୍ୟାମ ନଟବର ଲୋ,
ଏକା ମୁଁ ତ ନୁହଇଁ ତୋହର,
ଖାଲି ମିଛେ ଝୁରି ମରିବାର ସାର ।୩।

---

( ୧୦୪ )

ଛୋଡେ ଝୁରି ସଙ୍ଗାତ, ଗଲୁ ସରି ତ,
ଆଶା ନ ଭାଙ୍ଗ ହେମଗୋରୀ ତ ।୦।

ନବ ନବୀନା ରେ, ବିରହିଣୀ ମୋର
ନ ବିନାଶ ଅଶ୍ରୁ ନବ ନାଗରୀ ବର,
ଉର କରୁଣା ଧନ—କର ଧରୁଛି ଯେନ
ହୃଦବର କରୁଛି—ଡରପର ମଦନ
ଛାର ମୋରେ ନୋହିଲେ—ସାର ହେବ କଦନ
ନବୀନା ରେ, ବରଷି ଅନୁକମ୍ପା ସରିତ ।୧।

ଯତ-ମତ ହରି ଧୃତି ଧରିବ କେହି,
ରତି ମଦେ ଲଜେ ସହି, ତୋ ଶିରୀ ଗୁହି,
ତୋ ସରି ଏକା ଭ୍ରୁହି-କଶୋରୀ ଗୁନ୍ଦମୁହିଁ
କଣାଜନର ଅନ—ବୀଣା ବଚନା ମାନ
ମାନ ନ କର ଧନ—ଅଇଁ ଚୈକି ଲପନ
ନବୀନାରେ, କବିଶଶିରେ ଅନାଁ ଫେରିତ ।୨।

---

( ୧୦୫ )

ଯା'ରେ ଯାଉ୍ ଘରେ ଫେର
ରସିଅ ଦଗାଦଅ, ଯା………
ଯା'ଛୁଲେ ଗୀତ ବତାଇ
ଫେରଲୁ ମଦୁପିଅ………।୦।

ଯା'ରେ ଯା ଯା ଫେର ଯା
ଚେଜ କୁଞ୍ଜ କୁଟୀ,
ଙୁର ଙୁର କୁମାଖ୍ୟ ଗୋପ୍ର
ଙୁରେ ଲୁଟି ।୦।

ଗା'ନା ଗୁଣୁ ସୁରେ ତୁ ଗୁଠୁ ଗୀତ ଅଦ୍ଭୁର,
ଚୋ ନାଁ ଧର ସବଲ୍ଲ-ମୀରେ ନୟନ ଭର ।
ନବୀନା ସୁମନା ସଦେ ବିରଦ୍ଧ ଡାଟ,
ଚୋ ଶନା ଜାଦ ଭୁଲ ସାରା ଗୃନ୍ଦନୀ ଗୀତ
ବିଦ୍ଧ ହୂରେ, କପଟ ଶଠ ତୁ ଚେ ହଟି ।୨।

---

( ୧୦୬ )

ଶୋଲଲ୍ଲଣି ସବଗ ଗୃନ୍ଦ ମୋର
କୋକମୀନା ତୁ ଯା ଯା'ରେ ।୦।
ମୂଦ ମୂଦ ଅସେ, ତା' ଭୃତୁ ଭୃତୁ ଅଖି
ହୂରେ ପଳା ତୁ ହୂରେ ଯା ।

କୋଳରେ ଘୁମାଏ ସେ, ଦୁଧ କଟଲ ଖାଇ
ଦୂରେ ପଳା ତୁ ଦୂରେ ଯା—
କୋକ ମିନା ତୁ ଯା...।୧।

ବାଇଆ ହାତୀ ମୋ ହସୁଛି ସପନେ
ଦୂରେ ପଳା ତୁ ଦୂରେ ଯା,
କବାଗଣି ଅସି କୋଳରେ ଝୁଲଏ
ଦୂରେ ପଳାତୁ ଦୂରେ ହବେ ଯା—
କୋକମିନା ତୁ ଯା... ।୨।

---

( ୧୦୭ )

ବାଦନା ଧନ, ବାଦନା—
ଝାଇଁକି ଝଂପର ପାଣି ଚରଚେ, ବାଦନା' ।୦।

ଅମ୍ବତୋଠା ଗହ୍ୱଲେ ଜଳେ ଜୁତୁଜୁଳିଅ ନିଅଁ
ବାଲୁଅ ନନା ଡାକ ଦେଲଣି ହୁଟକ ହୁଅ ହୁଅ ।
ଅସିବ ଯେବେ ଅନ୍ଧାରଢୋଙ୍କୀ କହି ଦେବ ମୁଁ ମନା
ଶୋଇ ପଡ଼ରେ ନିଦରେ ମୋର କୋଳରେ ଗଣ୍ଡି ସୁନା ।୧।

ପହରେ ଅସି ରାତି ହେଲଣି,(ତୋ) ଅଖିରେ ନିଦ ନାହିଁ
ଅଦନ ନମଦ ଝଙ୍କ ବଗାସ ଗରଜେ ସାଇଁ ସାଇଁ ।
ବେଙ୍ଗ ଡାକେ କେଁ' କଠର ଗଡ଼ିଅ କୂଳେ ଥାଇ,
ଝିଁ ଝିଁ ଝିଁ ଝିଁ କାଉଠା ଗୀତ ଗାଉଛି ବାନା ।୨।

ବାଇଆ ହାଣ୍ଡି ମଥାରେ ମୋର ପାଳିଙ୍କ ପାଠଛତା
ସରଗୁ ଖସି ଗୃଦ୍ଧ ମାଁଯୁଁଠି ପିନ୍ଧାଇ ଦେବ ଛତା,
ସପନପରୀ ଗାଇବ ଗୀତ ଶୋଇପଡ଼ି ଶୁଣୁଥି,
ତା'ରେ ନାନା, ନା'ରେ ନାନା, ତା'ରେ ନାନା ନାନା ।୩।

---

( ୧୦୮ )

ସ୍ତ୍ରୀ—ହୁଁ ଜୟ ହନୁମନ୍ତ, କି ଚଢ଼େୟା—
ହୁଁ ଜୟ ହନୁମନ୍ତ ।
ସଜ ହେଲ କାହିଁ ବିଦେଶ ଯିବାକୁ
ଗୁରୁଅଢ଼େ ପରବତ ।୦।

ପୁରୁଷ—ଯେଉଁ ଯେଉଁ ଗଛ ବଣି ମୁଁ ବୋଲଇ
ଯେଉଁ ଯେଉଁ ଗଛ ବଣି,
କାହିଁକି ତୁମ୍ଭକୁ ଏତେ ଭାବେଲଣି ଲୋ,
ଭାଠ ପତ୍ର ଫିଟିଲଣି ।୧।

ସ୍ତ୍ରୀ—ପଦ୍ମଜ କାତୁରୁ କେତେ, କି ରଢ଼େୟା
ପଦ୍ମଜ କାତୁରୁ କେତେ,
ହାତ ଧରି ମତେ ଘରକୁ ଆଣିଲ,
ନାହିଁ ଚଗ୍ଭଳନା ହାତେ ।୨।

ପୁରୁଷ—ମୁଣ୍ଡରେ ସିନ୍ଦୂର ଠୋପା, ମୁଁ ବୋଲଇ
ମୁଣ୍ଡରେ ସିନ୍ଦୂର ଠୋପା,
କାହା ପାଇଁ ଅଜ କଜ ରସିକା ଲୋ,
ମଥାରେ କାଳିଆ ଖୋପା ।୩।

ସ୍ତ୍ରୀ— ପାଣି କି ନିଅଣ୍ଟ ଢାଉ ଉଠେଯ୍ୟା ରେ
ପାଣିକି ନିଅଣ୍ଟ ଢାଉ
ହାତ ଧରିଥିଲୁ କାହିଁକି କ୍ଷ .ରେ,
ହାଣ୍ଡିରେ ନାହିଁ ଗ ଭାତ ।୩।

ପୁରୁଷ—ଶୁଖିଲା ବାଉଁଶ ଭଣି, ମୁଁ ବୋଲଇଁ
ଶୁଖିଲା ବାଉଁଶ ଭଣି,
ତୋତେ ଦେଖି ମୁହିଁ ଭାଗର ଡେରିବି ଟେ,
ମେଘଲଗ୍ନ ଅଣ୍ଟୁ ଅଣି ।୪।

ସ୍ତ୍ରୀ—ଲାଜ ମାଡ଼ୁ ନାହିଁ ତୋତେ, ଉଠେଯ୍ୟା ରେ,
ଲାଜ ମାଡ଼ୁ ନାହିଁ ତୋତେ,
ଭଣ୍ଡିଉଛୁ ମତେ କୋଉଠରେ ମରଦ ।
ବଣିବୁଦା ପରବତେ ।୫।

---

( ୧୦୯ )

ରୂପୁଣୀ—ହାଣ୍ଡିଶାଳେ ହାଣ୍ଡି ଶୁଖିଲା ଗଡ଼ୁଛି
ଝୋପିଏ ତୋରାଣି ନାହିଁ,
ଭେଟେ ଅଲାଜୁକ ଓଳିଆ ଓଗାଳି
ବାହାନ ନେଉଛୁ ବୋଝେ ରେ,
ମୋର ବାପ୍ରଭ ଝିଅ,
ଦେଇ ଯାଉଛୁ ମୁହଁରେ ନିଆଁ ।୧।

ଝାଉଁମର ଖର ଦେଖିଲେ ଆଖିରୁ—
ଝଡ଼ୁଛି ଜୁଳୁଜୁଳିଆ,
କ୍ଷେତ ଖାଲ ସବୁ ଗଡ଼ ଗଡ଼ ଫାଟି
ଭୂଇଁ ତ କରଛ ଅଅଁ ରେ
କେଡ଼େ ନାଲଠା ହେଲୁ,
ଧାନ ବୁଣିବାକୁ ବାହାରିଲୁ ।୧।

ଚଷା—ଘରେ ଫେରି ଯା—ପାଟି ଗୋଲ କରନା,
ବାଟ ଓଗାଳି—ଅଣ୍ଟି ମୁଠି ଧରନା ।୧।

ଜଳ ସନ ସିନା, ହେଲା ନାହିଁ ବରଷା
ଏସନ କ୍ଷେତକୁ ପରା କରନ୍ତି ଆଶା ।
ଭୂଇଁ ଫାଟିଛି ସତ—ଚଷା ପୁଅ ମୁହିଁ ତ ।
ଭେଲା ସାହାସ ଧରି—ଯାଏଁ କାଅସି ଭରି ।
କରମେ ଯାହା ଥିବ—ସେ କି ଅନ୍ୟଥା ହେବ ।
କଥା ମାନ, ବାଟରେ ହଟା ରଟା ନା ।୨।

୨ୟ ଗୃମ୍ପୀ—ଭଣ୍ଡାର କୋଣକୁ ଅନାଁ ଏରେ ଭ୍ରବ
ଜଇଁଲା କଲହାଣ୍ଡିଆ
ଠେକା ମାରେ ଚାଲ କଳା ମେଘ ଛଳେ
ଚହିଅ, ବାଲି ଗାଧୁଅ—
ହେ ବୋଇଲା,
ଗୃହ ଚଷାଭାଇ ବାହନ ବୁଣିଦେ'
ଅଜ ନହୁଅ ତୁ ଠିଆ ଠିଆ ।୩।

୧ମ ଚାଷୀ—ଗଲା ସନ ମନେ ଅଛି ଭାଇ —
ମଲା କିଆରିରେ ଦୁବ ନାହିଁ
ଭଲା ଭରସା ଅଛି କି ଥାଇ ।
ଯାହା ବହନ ମୁଠେ କି ଥିଲା,
ପିଲାଙ୍କ ମୁହଁରୁ କାଢ଼ି ଆଣିଛି ମୁଁ,
ଧରଣୀ କଅଁଳିଆ କଲା ।୪।

୨ୟ—ଅନା ଅନା ମେଘକୁ ଅନା ଅନାରେ
ଝିଙ୍କାରି ଡ଼ାକ ଦଏ କାନାଁ,
ବେଗେ ବେଗେ ଭାଇ, ଗୋଡ଼ କାଢ଼ି ଚାଲ
ନ ଶୁଣି କାହାରି ମନା ରେ ।୫।

୧ମ—ବୁଢ଼ା ଅମ୍ବ ଗଣ୍ଡି ମୂଳରୁ ଲାଗିଛି
ପିମ୍ପୁଡ଼ି ଧାଡ଼ି କି ଧାଡ଼ି ।
ବାଲି ଜଳଧାର ଚାଲିଲେଣି ମାଡ଼ି
(ଶୁଭେ) ଗଡ଼ିଆରେ ବେଙ୍ଗରଡ଼ି ।
ଅରେ ଭାଇ, ଫଳିବ ଏସନ ସୁନା-
ଧାନ କିଆରିରେ ଛୁଟିବେ ବହନ
ଯେତେ ହେବ ଚଉଗୁଣା ।୬।

———

( ୧୧୦ )

ଅଥ ଅନାଇଁ ଝୁରୁ ଝୁରୁ ରେ—ଗଲୁ ସବୁ
ବଣର ମାଳତୀ ବେଣୀ ଫୁଟି ଝରିଗଲୁ ସବୁ ।୦।

ଗ୍ରୀଷ୍ମରେ ଗୋଲା ଚନ୍ଦନ ହେଲୁ ବାସି,
ଘନ ଛାଇଲେ, ଘନ କୋଳେ ବିଜୁଳି ଗଲୁ ହସି,
ଶରଦ ଜ୍ୟୋତ୍ସ୍ନା ହେଲୁ, ଉଗାରୁ ରେ ଉଗାରୁ ।୧।

ଶିଶିର ଜଳାଇ ଦେଲୁ-କମଳ ଆନନ,
ହିମକାଳେ ଘୋର ଜାଡ଼ ପାଶେ ନାହିଁ ଧନ ।
ବସନ୍ତରେ ମନ୍ଦୁ ଦେଲୁ ବଣୋଇ ରେ ବଣୋଇ ।୨।

———

( ୧୧୧ )

ଶୋଇପଡ଼ ଅରେ ନନ୍ଦନ ସଙ୍ଗାଳି
ରାତି ଏବେ ପାହିନାହିଁ ।
ପିଠି ଥାପୁଡ଼ାଇ ଶୁଆଇ ଦେବି ରେ
ଗୀତ ପଦେ ପଦେ ଗାଇ ।୦।

ଉଠିବୁ ସକାଳେ କାକ ଡାକଦେଲେ
ବହିଲେ ଶୀତଳ ବାଆ,
ବାଉଁଶ ବଣରେ କାଠକୁମ୍ଭାର
ଡାକ ଦେବେ ବଣିଚ୍ଛୁଆ ।୧।

ଖେଳଙ୍କର ତୋତେ                    କୋଳରେ ବସାଇ
ଗିନ୍ଧାଇ ଦେବ ମୁଁ ପାଠ,
ବଙ୍ଗବାଢ଼ ଧର                    ବୁଢ଼ୀମାଆ ଅଗେ
ହସି ଦେଖାଇବୁ ନାଟ ।୨।

ଛାନିକା କାଳରୁ                    ବଡ଼ ହେବୁ ବାପା,
ରଖିବୁ ବାପର ନାଆଁ,
ଧରମା କାଲୁଛ                    ଚପୋଢ଼ ମାଟିପିଲ୍ଲ
ସେଇ ଛ ଅମର ଗାଆଁ ।୩।

ପାଠ ଶାଠ ପଢ଼ି                    ଯୋଗା ହେବୁ ପୁଣି
ଗଢ଼ିବୁ ବଡ଼ ଦେଉଳ,
ତୋତେ ଅଣାକର                    ଧନମାଳ, ସତେ
ହସି ମୁଁ କାଟୁଛି କାଳ ।୪।

ଖଟି ଖାଇବାକୁ                    ଡରଯିବୁ ନାହିଁ
ଥାନ୍ ଥାଉ ଦୁଇ ବାହା,
ଖାତର ନକର                    ସତ କହୁବୁ ରେ
ଚଉବାହା ତୋର ସହା ।୫।

———

( ୧୧୬ )

ବରଷା ହୁଏ ହୁଏ ଅସେ ସଖି,
ବରଷା ହୁଏ ଅସେ ।
ବନ୍ଧୁ ବନେ ଏ ନୟନେ ଧାର ନୀର ଭସେ ରେ ।୦।

ଶୁଣି ଘଡ଼ଘଡ଼ି ରଡ଼ି
ଯାଏ ଛ ଜୀବନ ଗଣ୍ଡି
ଘନ ଢୋଲେ ଖେଳି ବିଜୁ ମୋତେ ଦେଖି ହସେ ରେ ।୧।

ଅଭାଗିନୀ ମୋ ସରି ରେ
ନାହିଁ ନଥିବେ ନାରୀରେ
ଏକାଳେ ରହିଲେ ଯାହା ନାହା ପରବାସେ ରେ ।୨।

ମନକଥା ହେଲା ଭାର
ଶୁଖିଲା ମାଳତୀ ହାର
ନିତି ଗୁନ୍ଥେ, ନିତି ଶୁଖେ ବନ୍ଧୁ ପଥ ଆଶେ ରେ ।୩।

———

( ୨୧୩ )

ଝରାଫୁଲ ଝରିଯାଏ          ମରାମନ ମରିଯାଏ
ଭରା ଧାର ଖରାରେ ଗୋ ଶୁଖେ ।୦।

ଧରାଧୂଳି ବୋଳି ଅଙ୍ଗେ—ଶିଉଳୀ ଲୁଚେ ଗୋ ରଙ୍ଗେ
ଗଳାକଥା ଥିଲା ଯେତେ—ଗୋଟି ଗୋଟି ଲେଖି ବୁକେ
ରାତର ପୀରତି ଝୁରି—ନୀରେ ଅଖିପାଏ ପୂରି
ନୀରମାଖି ସେ ଯେ ଦଖୀ ମଥା ପିଟି ମରେ ଦୁଃଖେ ।୧।

ଘଡ଼ିକର ହସ ପଲକର ଖେଳ ଲୁଚକାଳି ସେ ଛ
ଜଅଁସ ଥିଲକୁ ପିନା ପନେଇଁ ମହଛ,
କଥାରହେ, ମଥାଯାଏ ଛପି ଚତା ମୁଖେ ।୨।

———

( ୧୨୪ )

ରୂପ ମୋହେ ଗଲି ଭୁଲି
ଆଗପଛ ନ ବିଚାରି ମନ କଲି
କମଳ ଢୋଳିବି ବୋଲି ।୦।

(ତହିଁ) ବିଷ କାଳୀୟ ନାଗର
କଲି କଳା ତନୁ ଜର ଜର
ହେଲି ସତେ ବଡ଼ ହରବର
ଶିରେ କଳଙ୍କ କାଳିମା ବୋଳି ।୧।

କାହିଁଥିଲି ସୁବାସ, ମଳୟ
ଛୁଇଁ ତନୁ କଲି ତନମୟ,
ପୋଛି କାଳିମା କଳଙ୍କ ମୋର
ଦେଲି ଝଲସାଇ ତନୁ ଝଳି ।୨।

---

( ୧୨୫ )

କଳା-ଘନ-ଘୁଇ-ଘୁଇ,
ରଖିଥିଲି ଗୋଲାପରେ ଓଢ଼ଣୀ ଘେରାଇ ।୦।

ସେଦିନ ବାଦଲ ତଳେ, ବିଜୁ ଥିଲି ଖେଳି
ଧୂଆଁ ଳିଆ ଜଟା ମେଘ, ବାନ୍ଧୁଥିଲି ମେଲି ।
ବାରେ ବାରେ ଆସି ଅଳି
ଝୁରି ଝୁରି କଲି ଅଳି.
ଅମାନିଆଁ ଝାଞ୍ଜା ଦେଲି, ଦୂରେ ଘଉଡ଼ାଇ ।୧।

ଉଠିଲା ଫୁଲଆ, ଯାଉ ହେଲା ପାହାନ୍ତିଆ
ଶୁଭ ଲଗନରେ ଡାକେ କଜଳ ପାତିଆ ।
ରବିର କର ପରଶ
ଫୋଟିଲା ମନ-ପସଣ
ରଷି ଗଲା ବଉଦରେ ନେଲା ସେ ଉଡ଼ାଇ ।୨।

---

( ୧୨୭ )

(ଯାଏ) ବରଷା ଯେବେ ଫେରି,
ବୋହୂ-ଗାଧୁଆ ସାରି, ବାହୁଡ଼େ ଘରେ
ତନୁପାତଳୀ, ଲଜକୁଳୀ ସେ ଝିଅ ।୦।

ଶାଗୁଆ ପାଟ ଶାଢ଼ୀ-(ତାର) ତନୁରେ ଅଛି ଜଡ଼ି
ଫାପସା ଧୂଆଁ ରଙ୍ଗୀ-ଓଢ଼ଣୀ ହୋଇ ଘୋଡ଼ି,
(ଗୁଳେ) ଅଳସ ପାଦେ ତାର-(ସତେ) ସରମ ଅଛି ଘେରି ।୧।

(ଧୋବ) ଗଳ ମୁକ୍ତାହାର-(ତାର) ଗଳାରେ ଦେଲା କାଏ
ମିଳକୀ କହେ ହସି-ଶିଶିର ପରି ସିଏ,
(ଜାଣ) ବଡ଼ ସଙ୍କାଚ୍ଛ ଆସେ (ତାର) ଶରଧା ଭୋରେ ଝିଅ ।୨।

ଉଜ୍ଜଳ ଯହୁଁ ହେଲ (ସନ୍ଧ୍ୟା) ହାର ଲୁଚାଇ ଦେଲା
(ଲାଗି) ରହିଲା ଘରେ କାହିଁ (କାଲେ) ଉଗାର ଦେବେ ଗୁହିଁ,
(ତାର) ଚୈତ୍ର ପିରତି ପରି, (ଦାଣ୍ଡେ) ପଡ଼ିବ ହଟାହୁରି ।୩।

ଯେବେ ସଞ୍ଜ ଅସେ ଘେର (ଖୋଷ୍ଟି) ମଥାରେ ଧାନ କେସ୍ରୀ
(ଫୁଠା) ମକଦଲର ମାଳି (ଛାର) ଗଳାରେ ଯାଏ ଝୁଲି ।
(ମନେ) ମିଲନ ଅଶା ଭଣ୍ଡ (ଫେର) ଗୁହେଁ ବସନ୍ତ କେଞ୍ଚୁଭ ।୪।

---

( ୧୧୭ )

ଅରେ ବନ୍ଧୁ,

ଅମ୍ଭ ଦନେ କାଅାଁ କଇଅାଁ ରାନ୍ଧୁ ?

ବରଷା ରାତ, ଚମକେ ଘାତ, ଗରଜେ ଘଡ଼ଘଡ଼ି
ସାରୁବୁଦାମୂଳେ, ସଭାରେ ବସି, ବେଙ୍ଗ ଘାଡ଼େ ରଢ଼ି ।
ତୁ’ ଗାଉଥିଲୁ ମେଘୁଅ ଗୀତ-ଶୁଣିଲେ ନାହିଁ କେହୁ,
ହି, ହି, ହି, ଏଇଥିପାଇଁ ଶଟକେଇ କାନ୍ଦଣା କାନ୍ଦୁ ? ।୧।

କାଟିକାଟିଅ ଅନ୍ଧାର ରାତ, ତହିଁକି ଝଡ଼ ପାଗ,
ଚୋଠା ଗନ୍ଧଲେ ଜୁ ଜୁଜୁଳିଅ ଉଡ଼ିଲେ ପାଇ ବାଗ ।
ବାଦଲ୍ ମେଘ ଗୁଲୁ ଉପରେ, ଜହ୍ନ କା ଛାଏ ନାହିଁ,
ହି, ହି, ହି, ଏଇଥିପାଇଁ ବହୁକି ମିଛେ ଲାନ୍ଦୁ ? ।୨।

ଝିଙ୍ଗଅ ପୋକର ପାଳି ପଡ଼ୁଛି, ମନ ସରାଗେ ଜନେ.
ଅଟ ଗରବେ ଡେଣା ଦ’ଖଣ୍ଡ ଅଧ ବାଟରୁ ଛିଡ଼େ ।
ନାଲି ପିମ୍ପୁଡ଼ି, ଖାଅନ୍ତି ବେଢ଼ି, ଗୋଟିକି ଗୋଟି ଧରି
ଅଖିରେ ଦେଖି, କାଲକୁ ଗୁହିଁ, ଛତା ଠେକି ଦେ’ ବନ୍ଧୁ ।

---

ପୋକଶୁଙ୍ଘା ଫୁଲ ବାସ୍ନ-ରସିବାର ପ୍ରିଏ ରସ୍ତୁ ।
ଘୋଡ଼ା ମୁଣ୍ଡ ହେଲେ ମୁଆଁକୁ ଯୁଗତ, ତହିଁକି କାହିଁକି ହସୁ ? ।୦।

ବୋଲ ମାନୁ ନାହୁଁ କୋଇଲି
ତୋତେ ଏତେ ମତେ ପରା କହିଲି,
ଏଡ଼େ ଅମାନିଆଁ କାହିଁକି ?
ଆଖି ଥାଉ ଥାଉ ଦିଶୁ ନାହିଁକି ? ।୧।

ଭୁଲି ଯୁଅ ଅରେ ବଉଳ ରସିଆ
ଆସିଲେ ବସନ୍ତ ଅସ୍ତୁ,
'କାଅ'ର ଆଦର ବଢ଼ିଥିଲା ଦିନେ
'କୁହୁ' ଆଉ କାହିଁ ଭାଷୁ ? ।୨।

କଜଳ କାଳିଆ ତନୁ ରେ କୋଇଲି,
କାଉ ଭୁଲେ ମିଶିଯାଉ,
ଚାହାଂରି ଗରାଖ ଥିଲେ ସିନା ଭଲେ
କଣ୍ଠଟିରେ କେତେ ଭାଉ ।
ଭେକ ଯହିଁ ସଭା ବକତା
ଆଉ କିଏ ଶୁଣେ ଅବା ତୋ କଥା,
କହ, ମଉନେ କାହିଁ ନବସୁ ? ।୩।

———

( ୧୧୯ )

ଅକାଶେ ଜହ୍ନ ହସେ,
ଏଇ ନୀଳ ଯମୁନା ଜଳେ
ରୂପେଲି ଜହ୍ନ ଭାସେ ରେ ।୦।

ବଉଳଗଛ ଗହଳ ତଳେ ଲୁଚକାଳି ଖେଳେ ରେ
କୁଞ୍ଜ ତଳେ ଫୁଟେଫୁଟିକା ମିଶଗଠମ ଗାଇ ବସେ,
ମହୁଲ ଫୁଲେ ମିଶେ ଠେ ରେ ।୧।

ଛପିଛପିକା ଦେଖେ ଏ ଖେଳ ଏକୁଟିଆ ତାରା
ନେଳୀ ଦେହେ ମିଶିବ କେବେ ସେଇ ତନୁ ଗୋରା
ଚମାକେ କନକଲତା
ଚମାକେ କନକଲତା, ସୁନାଶତା,
ରନରାଣୀ କେଶେରେ ।୨।

———

( ୧୨୦ )

ମାଟି ପେଟ ଫାଟି ମାଆ ଦେଖା ଦେଲା
ମୁଣ୍ଡେ ଧାନ କେଉ କେଉ ।
ମାଆକୁ ଖୋଜୁଛୁ ବାଟେଠାଇ କାହିଁକି
ଅନାଁ ଥରେ କେଉ କେଉ ରେ,
ଦେଇ ବୁକୁ ବଦାଇ,
ମାଆ ରଖିଛୁ ତ ଖଣ୍ଡିଖିସ୍ତ ରେ ।୧।

ଅଣଚୂବଲା କଲେ ମାଆକୁ
ଭାଙ୍ଗିବ ବାଟ ବଧା ଘର ଖଣ୍ଡି,
ଅଟପଟ ସାଙ୍ଗା କେହୁ ନ ହୋଇବେ
ମରବୁ ସିନା ଦସ୍ଣ୍ଡରେ ।
ଦେଦେବେ ଭଗାର ଭଣ୍ଡି,
ଫାଟିଯିବ ଚୋ ମୂରନ୍ଧା ହାଣ୍ଡିରେ ।୨।

---

( ୮୨ )

ତୋଟା ଅମ୍ବଡ଼ାଳେ ବଉଳ ଦେହଟି ଗଲା
କୁହୁ କୁହୁକୁ ବନ-କୋଇଲ୍ ବୋଇଲା,
ଋତୁ ବସନ୍ତ ଆଇଲା ॥୦॥

ତୁମେ ବଡ଼େ ହେଲ୍ ଆସି
ଆମର୍ ଦୁଆର ଠାଇଁ
ଧନ ଦରବ କିଛୁ ନାଇଁଛ ଆମର
ମନ ତୁଷିମାର ପାଇଁ ।
ଜୁହାର ଆମର ହେଉ
ଟାକଥିଲୁ ଦରଶନ,
କେଡ଼େ ଭାଇଗ୍ୟ, ମନ କାମନା ପୂରଲା
ଆଶା ଆମର ମିଟିଲା ।୧।

ଦରଅରେ ଭର୍ ପାନି
ଗୁଡ଼ଳ ତ ପିଏ ନାଇଁ
ବରଷାକୁ ସେ ବନ୍ଧାଥାଏ ତ ଅନାଇଁ
ବୁନ୍ଦେ ବୁନ୍ଦେ ପାନି ପାଇଁ ।୨।

ସଭିଏଁ ସେଇମିତକା-
ଗୃହଁ ବନ୍ଧ ଥିଲୁଁ ଏକା
ତୁମ ହାତର ଦାନ ଧରମ ପାଇଁକି
ଆଶା ଅମର ତହିଁକି ।୩।
ଅନ୍ଧାର ଘରରେ ଦେଲ
ଦୀପର ଅଲୁଅ ଜାଲି
ମଥାକୁ ନୁଆଁଇ ଆମେ ମାଗୁଁ କଇଲନ
ଆମ ମନ କଥା ଶୁନ ।୪।

---

( ୨୬୬ )

ବନୋଦନ ରାଇ,
ନ ଜାଣୁନି ପୀରତର ଅଖି ଡାବୁ ନାହିଁ ଗୋ ।୧।
ଯାଉ ତୁ ଯମୂନା ଜଳେ
ଘଟ୍ଟୁ କେତେ ଛଳେ
ବାର ଭର୍ ଜଳସି ତୁ ଡାଳୁ ଥରେ ଥରେ
ଭରବାକୁ ଫେରୁ ପୁଣି ଯମୂନାର ତୀରେ ।
ଲୁଙ୍ଘିକି ଛନକୁ ଥାଉ ପାଶେ କେ ନଥାଇ ଗୋ
ସତ କହ ଅଖି ଆଉ ଥାଏ କି ତୋ ସହ୍ନ ଗୋ ।୨।
କୁଞ୍ଜବନେ ଭେଟଁଟ ଆସି ଯେବେ ମନ ଚୋର
ସଖୀ, ସହଚରୀ ତୋର ହେବେ ସାଛପର
ପୀରତ ବ୍ୟସନ ଅଠା
ଗୁଖିଲେ ଏରେ ସେ ମିଠା

ପାଶୋରବୁ ନାଚିଦନ ଜୀବନାନ୍ତ ପାଇଁ ଗୋ
ପଥହରା ହେବୁ ଧନୀ, ଆଖି ଥାଇ ଥାଇ ଗୋ ।୨।

ଚେତାରେ ଦେଖିବ ଆଖି ଘୁମର ସପନ
ଖରାରେ ଦଶିବ ତାରା, ରାତି ହେବ ଦିନ
ଦ୍ରୁମ ହେବ ଗିରିଶମ
ଜଳ-ପଥେ ଯିବ୍ରୁ ଗ୍ରାମ
ଶରତ ଗୁହାନୀ ଛାତି ସମାନ ଲାଗଇ ଗୋ,
ବାଷ ନାଶା ପୀରତି ଗଞ୍ଜାଇ ଗୋ ।୩।

———

( ୧୨୩ )

ଝରେ ବରଷା ଝୁପୁରୁ ଝୁପୁରୁ ।
ଗହଳ ଗଛ-ପତର ପାଣି, ଭୂଇଁରେ ପଡ଼େ ଟୁପୁରୁ ଟୁପୁରୁ ।୦।

ପାହାଡ଼ ଡିପା ଖମଣା ତୋଳେ
ଧ୍ଳଇଧ୍ଳଇଆ ବାଦଲ ଖେଳେ
ତାଲଆ ମେଲି ମୟୂର ନାଚେ ଶୁଁଘି ଦିହ ଖୁପୁରୁ ଖୁପୁରୁ ।୧।

ବେଙ୍ଗ ବୋଲେ ବେଙ୍ଗୁଲି ଶୁଣ
ଖଣ ଖଣକେ ପୃଥିବୀ ଆନ
ଖସି ଯିବଟି ମଜ୍ଜ ବେଳା ଡ଼ିଆଁ ମାର ଗୋ ଫୁକୁରୁ ଫୁକୁର ।୨।

———

( ୧୨୪ )

ଆକାଶେ ଚନ୍ଦ୍ର ହସେ—
ଏଇ ନୀଳ ଯମୁନାଜଳେ,
ଭୁଲେଇଲ ଚନ୍ଦ୍ର ଭାସେ ଲୋ ।୦।

କୁହୁ କୁହୁ, କୁହୁ କୁହୁ ବଣ କୋଇଲି ଗାଏ
ମହୁଆ ବାଆ ମହୁଲ ଫୁଲ ଛୁଇଁ ଛୁଇଁ ଯାଏ,
ଗଛ ତଳରେ ଜହ୍ନ ଯାଉଛି ମିଳନ ଗୀତ କି ଗାଏ ଲୋ ? ।୧।

ନଈ ଏପାରି ସେପାରିରେ ଚକୁଆ ଚକୋଇ
ଏମିତି ଜହ୍ନ ରାତି ସାରା ଦେଖା ଚାହାଁ ନାହିଁ
ଟେଣ୍ଟୋଇଠା ଗାଇଗାଇକା ଧାଉଁଛି କାହା ଆଶେ ଲୋ ।୨।

ମଲ୍ଲୀ ଫୁଟି ନାଚିଯାଏ, ଚମ୍ପାର କେଶର
ହସି ହସି ହେନା ଦିଏ, ବାସ ଚହଟାଇ
ହଳଦୀ ମାଣି, ଶିଉଳୀବଣୀ, ଚନ୍ଦ୍ରମା ଚାହିଁ ବସେ ଲୋ

ଝଲମଲିଆ ଚନ୍ଦ୍ରମା ଦେଖି ତାରାଏ ଗଲେ ଛପି
କାହିଁ ଦେଲାବେ ଟରବ ଭଙ୍ଗା ଶରଦ ଚନ୍ଦ୍ର ଥାପି,
ବଉଳ ବଣେ ଝରି ଫୁଲ, ସତେ ପରିହାସେ ଲୋ ।୪।

---

୧୨୫ )

ହେଉ ଶରଦର ଜହ୍ନ
ମନେ ପଡ଼େ ଭୁଲି ଦିନ
ଆଖି ଡଳଫୁଟା ଅଭିମାନ ରେ
ନାଚି ନାଦ ପାଶୋରେ ନୟନ ।୧।

ମୁଖ ସିନା ଫିଟେ ନାହିଁ
ବୁକୁ ଯାଏ ଫାଟି ସହି ।
ପରଦେଶୀ ବନ୍ଧୁଆ ରତନ ରେ
ନିଠୁର ବିଧାତା କଲା ଭିନ୍ନ
ନିଶି ନିଦ ପାଶୋରେ ନୟନ ।୨।

ଜନମରେ ଭେଟ ଅନ୍ତ
ନ ହେଲେ ପଛେ ନ ହେଉ ।
ରହିଲି ମୁଁ ଚାହିଁ ଅନୁଦିନ ରେ
ଦିନଶେଷେ ଦିଅ ଦରଶନ
(ବନ୍ଧୁ) ନିଶି ନିଦ ପାଶୋରେ ନୟନ ।୩।

---

( ୧୬୭ )

ମାଘ ଫଗୁଣ ମାସ ଆସେ
ଚୈତ୍ର ମହୁଆ ଫେରି ବାସେ ।୦।

ଭରା ବଉଳ ହସେ,
ଢୋଇଲି କୁହୁ ଭାଷେ,
ଫେରି ନ ଆସେ ଧନ ପାଶେ ରେ,
ଘୁରି ତା ମନ ଛଳେ ଭାସେ ।୧।

ପଲ୍‌କ, ସପନର ସାଥୀ
ଗଲଣି ସାରା ଚୈତ୍ର ରାତି
ଭଅଁର ମୋତେ ପରିହାସେ ରେ
ଫୁଲରୁ ଫୁଲେ ଉଡ଼ି ବସେ ।୨।

ରୁକୁଠା ଝୁରୁଝୁରୁ ଥରେ
ଖର ପବନ ମନ ଭରେ
ଅଖିରୁ ଧାର ନୀର ଖସେ ବେ
ବସନ୍ତେ ଧନ ପରବାସେ ।୩।

---

( ୧୨୭ )

ବରଷା ଆସେ ସଖି, ମୋ ମନ କାହିଁକି ଏରେ
ଭରସା ଭାସେ ମୋର, ପାହାଡ଼ୀ ଅକୂଳ ଝରେ । ୦ ।

ବାଦୁଅ ବଉଦଠା
ଲାଗୁଛି ସତେ ହଠା
ନିଠୋଳ ଗୁନ୍ଦ ମୁହେଁ କାଳିଆ କଜଳ ବୋଲେ,
ଅଦୋଷେ ଏ କି ଦଶା, ଏଡ଼ିକି ନିଠୁର ସେ ରେ ।୧।

ଯା’ ଲାଗି ଦିନ ରାତି
ଠାକି ରହୁଛି ଛାତି
ତା’ ଚଲା-ପଥ ଧୋଇ ବରଷା ଖସଡ଼ା କରେ
ଭଗାରି କାହିଁକି ସେ ହେଲା ଛ ବୁଝି ନପାରେ ।୨।

ମାଳତୀ ବାସ ଧୋଇ
କି ସୁଖ ପାଏ ସହି ।
ଦାମିନୀ ରହି ମୋରେ ଚଳକେ ପରିହାସେ ରେ
ଅବୁଝା ପୋଡ଼ା ଆଖି ଉଛୁଳେ ଛାତିଲା ନୀରେ ।୩।

---

( ୧୬୮ )

କୁଞ୍ଜବନେ ଫୁଟିଲା ନବମାଳତୀ,
ଅନାଁ ରେ ସଜନୀ, ଅନାଁ ଯୋଛି ଅଳସ ଅମାବୃତ ।୦।

ଘେର ଆସେ ଘନ
ନାହିଁ ତ ମୋହନ
ବିଜୁଳି ଖେଳୁଛି ଘନ ବୁକେ ଗୋ
ଥମକେ ଚମକେ ଯୁଡ଼ି ।୧।

ମରମ ଭୁଲାଇ
ମୁରଲୀ ବଜାଇ
ରହିଲା ପରା ପର ପ୍ରୀତିରେ ଗୋ
ଭଣ୍ଡାଇ, କପଟ ଅତି ।୨।

ରାଣୀ ଝୋଟରେ ମୋର
ଆସିଲେ ଏଥର
ରହ ଏ ନିକୁଞ୍ଜ ଦୁଆରେ ଗୋ
ମନା ତୁ କରିବୁ ହୃତି ।୩।

କବିଶଶି କହେ
ଏମାନ କି ରହେ,
ଡାକିବ ଯେବେ କାହ୍ନୁ ରାଣି ଗୋ
ଅର କି ନଯିବ ମତି ? ।୪।

———

( ୧୨୯ )

କି ଭାଳ ଦେଲ ସତେ !
ନ'ଅଙ୍କୁ ବନାଲ ଛ,
ନଈନାଳ ପଣା ବାଲ୍ଲୁଗର ଦେହ୍ଲ
ଅଗୁନର ବେଣା ବଣ ଜଳାଲ ଛ ॥୦॥

ଲିଅ ଗୋଟିଗୋଟି, ଖଇ ମୁଟିମୁଠି
ଗୁଡ଼ଲବେ ମଲ୍ଲଣି ଭରଲ
ବାଲିଗରଡ଼ାକୁ ବାଛୁବାଛୁ ପର୍,
ଘାଅଭିତରେ ମଟି ଖର୍ ଭରଲ ଛ ।୧।

ଘାଅଁ ଷେଛମାଲେ ଖଣ୍ଡିଆ ଭୂତଠା
ଚଙ୍କା ଭଉଁସି ଛ ଖେଳା ବୁଲିଲ.
ଚଙ୍କୁ ରିଲ ଧୁବ ଗଜାକୁ ଶୁଖିଲ
ଗୋଚରରେ ଚିରଧୂମା ଚରଲ ଛ ।୨।

---

( ୧୩୦ )

ଅଙ୍ଗାଲ୍ ଦେ' ଠାଣି ଦେ'
ଏଇ ଲାଲ ଦରିଅ ଜଲେ,
ପାଗଡ଼ ଦେ' ମୁକ୍ତାଲି ରେ ।୦॥

ଏଇ ଭୁଇଁର ସାଧବ ଟୋହ୍ନୁ, ଲଖିଯାଇଛୁ ନାଆଁ,
ମଙ୍ଗେ ନୂଜି ମାଅ ମଙ୍ଗଳା ଭସାଇ ଦେଇ ନାଅ,

ବଣିଜ ସାଉ ସାହୁତ ପୁଅ
ଶୁଭ ବାହୁଡ଼ା ଭାଲ ରେ
ପକାଇ ହୁଲ ହୁଲି ॥୧॥

ସେଇ ରକତ ତୋ ଦେହରେ ବହୁଛି ତ ଅଜି
ପଥର ବୁକୁ, ଝାଣ୍ଟୁଆ ବାହା, ତୁ କଳିଙ୍ଗ ମାଟି,
ଫଡ଼ଙ୍କା ବାନ୍ଧ ବୋଇତ ଅଗେ
ପଡ଼ୁଛି ତୋର ପାଲି ରେ
ଲଗନ ଯାଏ ବଳି,
ପାଗଡ଼ ଦେ' ମୁଭାଲି ରେ ॥୨॥

— — —

( ୧୦୩୧ )

ଓ.......

ମୋର ଜୀବନ ଯୌବନ ଯାଏ,
ତାର ପଥ ଅନୁସରି ମୁଁ ଯେ ଧାଏଁ ।
ଜଗି ଜାଗି ପଥ ଅନୁସରି ମୁଁ ଯେ ଧାଏଁ । ୦ ।

ନିତି ନିତି ଫେରି ଗୃନ୍ଦନୀ ଘୂମାଏଁ-
ଗୃନ୍ଦନୀ ଘୂମାଏଁ । ୧ ।

ଝୁରି ଝୁରି ଝୁରି ନିଶିଦିନ ସାରେଁ
ଝରି ଝରି ଝରେ,—
ଆଖିନୀର ଧାର,

ଦଗାଦାର-ଦଗାଦାର ନାଗର
ଲଗା ନାହିଁ ତୋହର-
ଟୁର ନଶିଦନ ସାରେଁ,
ନାଗ ଜଗି ପଥ ଅନୁସର ମୁଁ ଯେ ଧାଏଁ । ୨ ।

---

( ୧୩୬ )

ବଣମଲ୍ଲୀଲେ !
ଭଅଁର ତ କଲା ସାଉଧର ।
ଅପଣାର ମଣିଥିଲୁ ଫଳ ତ ଫଳାଲା ତା'ର । ୦ ।

ଯଉବନ ଗରବରେ ହେଲୁ ବାଇଆଣୀ
ଧାଇଁଲୁ ଦାବନାଭୂତ ପଛେ, ତୁ ନଜାଣି ।
ଏବେ ଛୁଞ ଫାଟି ଲୁହ ଝରେ ଧାର ଧାର । ୧ ।

କହୁବାର ଭଲକଥା ମଣିଲୁ ତୁ ସଲୁ
ଗୁଖିଲୁ ପୀରତି ବଷ ହେଲୁ କଲବଲ ।
ଟେକି ଗୁଲବୁ କି ମୁହଁ, ଲଜଥିଲେ ତୋର । ୨ ।

ଧନଙ୍କ ପାଇଁ ତ ନୁହେ ଜୀବନଟା ସାର
ଘର କଣେ ବସି ବସି କାନ୍ଦୁଥିବୁ ପର,
ଅପଣା କଥକୁ କହ ଦୋଷଟି କାହାର ? । ୩ ।

---

( ୧୩୩ )

ପ୍ରାଣବନ୍ଧୁରେ !
ଅଜ୍ଞ ନାଚେ ଆଖିରେ ତୋ ଲୁହ,
କି ମନେ ତୁ ଗଲୁଭୁଲି ବାର ପାରୁନାହିଁ ରେ ॥ ୦ ॥

ଧନେ କରିଥିଲୁ ବାଳା ଗଳାମଣି ହାର
ପାଶରେ ନଥିଲେ ଝୁରୁ ଦିନ ରାତି ସାରା ।
ପର ପୀରତିରେ ରସି ଦେଲୁ ସବେ ବାଇ ! । ୧ ।

ମନ ଦିଅନାଅ ତୋର ଛଳନା ଚାତୁରି
ସତ ମଣିଥିଲି ମୁଁ ନାରୀ—ମନ ମୁଁ ନବାର ।
ଯଉବନ ଗରବ କି ସଦାଦିନେ ଥାଇ । ୨ ।

ରାଣି ଦିଆଇଛୁ କେତେ ମଥା ତୁ ଛୁଆଇଁ
ମହତ ଦି'କଡ଼ା କଲୁ ଲାଜକୁଳ ଖାଇ ।
ଦାଣ୍ଡ ଲୋକେ ଛିଛି କଲେ ତୋ କରମ ପାଇଁ । ୩ ।

———

( ୧୩୪ )

ବରଷା ଅସେ ସଖୀ, ମୋ ମନ କାହିଁକି ଦରେ,
ବାଦଲୁ ମୋ ଅଖିରୁ ଝରଣା କାହିଁକି ଝରେ ॥ ୦ ॥

ବଜଦ ଗୁଣ ଶର ବଜୁଳି ଅଖିଠାରେ
କାଜଳା ଭୁରୁପରେ କିଏ ସେ କଟାକ୍ଷ ମାରେ,
କାଳିଆ ମେଘତଳେ-କାନ୍ଦିଥାଏ ଧଡ଼ଧଡ଼ି
ତା'ଲାଗି ତୋଳା ଫୁଲ ଶୁଖେ ଧୂଳି ଶେଜ ପରେ । ୧ ।

———

( ୧୩୪ )

ଦରଦର ହସି ଲୁଚକାଳି କିଏ ଖେଳେ ସେ ?
ଜରଜର ତାର ଓଦା କାନି ପାଣି ପରଶେ ॥ ୦ ॥

ନେଳିଆ ମେଘ ଚକ୍‌କଣି ଶେଜେ
କାହଲ୍ କଦେ ଶୋଇଥିଲା ସେ,
ଅମାନିଆ ବାଆଁଠା, ଛୁଇଁଲା ସତେ, ଉଠିଛି କି ସେ । ୧ ।

ଟେଣ୍ଟୋଇ ପକ୍ଷୀ ମନଖୁସିଆ
ଡାକ ଗୁଡ଼ୁଛି ରସରସିଆ,
ଚକୋର ମରେ-ଚକୁଅ ଝୁର
ସ୍ୱାତିଠାସାର ଫାଟୁଛି ହିଆ ।
କାହା କରମେ ଗୁନ୍ଦନୀ ଖେଳେ,
କାହା କପାଳେ କାଅଁ ବରଷେ । ୨ ।

---

( ୧୩୫ )

ଛଳ କଜଳ !
ତତେ ମୁଁ ଚିହ୍ନିଛି ଦାଏଁ ।
ମୁହଁରେ ଯା'ର ହସ ନାଇଁ ସେ, କୋଉ ମୁହଁକୁ ଖାଏ ? ॥ ୦ ॥

ଯା'ର ଅଖିରେ ନାହିଁ ରଙ୍ଗ
ତା'ର ଗୁହାଣୀ କୋଉ ଢଙ୍ଗ,
କଳା କଜଳ ଗିରି ନାଇଲେ ଯେତେ, ଅଖି କି ହସଥାଏ ? । ୧ ।

ଯେବେ ସଖିଙ୍କ ମନେ ନାହିଁ
ତେବେ ସୁଅଙ୍କ ଥାଏ କାହିଁ ?
ଲୁଚ୍ଛା ଲୋକ ଦେଖାଣି, ମନ ଭୁଲାଣି, ଅର୍ଥରେ ଥିବାଯାଏ ।୨।

ଯିଏ ମନଟି ଦେଇ ଜାଣେ
ସିଏ ମନଟି ସିନା ଟାଣେ
'ନାଅ'ରେ ଯେବେ 'ଧଅ' ନଥାଏ, ଲୁଟେ ସେ ଘ୍ଳଏଁ ଘ୍ଳଏଁ ।୩।

———

( ୧୩୭ )

ଧନ ! ମନରେ କର ଥରେ ବିଚାର
ପ୍ରୀତି ମାନେ କି କାହିଁ ସ୍ୱୀତ, ଅପ୍ରୂର ॥ ୦ ॥

ସବଗ ଗୃନ୍ଧ ଖସି-ଧୂଳି ଧସ୍ରେ ଅସି
ପୀରତିରସେ ରସି-କୁମୁଦ ମନ ଡୋଷି,
ସେବାରେ ବୋଲ୍ଲଏ ସେ ସୁସାର । ୧ ।

ବୃନ୍ଦାବନେ ଧନେ, ନଟନାଗରବର
ଧନୀ ପାଦେ ଲେଖିଥିଲେ ଅଲତା ଗାର
ରସରାଜ ମୋହନ-ସେ ତ ଭାବ ଅଧୀନ
ରସବତୀ ରସରେ-ନିରତ ସେ ମଗନ
ତହୁଁ, ସାନବଡ଼ କଳନା କି ଘ୍ଳବ ? । ୨ ।

———

( ୧୩୮ )

ଛି, ଛି, ଅଉ ଦଗାଦିଅ ରେ
ନିଠୁର କାଳିଆ ॥ ୦ ॥

ରୁହଁ ରୁହଁ ପାହିଗଲା କାଲି ସାରାରାତି
ଛତିକି ମନାଇ ପରା ମାରିଦେଲୁ କାତିରେ । ୧ ।

ଛୁପିଛୁପି ଛାଇତଳେ ଜହ୍ନଗଲା ଢୁଳି,
ଟିପିଟିପି ତରି ଦେଲେ ମୋ'ର ଆଖି ବାଲିରେ ।୨।

ଛାଇଛାଇ ନିଦ ନିତ ଛାଇ ତୋର ଭରେ,
କାହିଁକାହିଁ ବୋଲି କବଣଗି ତ ଜୁହାରେ ରେ
ନିଠୁର କାଳିଆ । ୩ ।

———

( ୧୩୯ )

କୁଞ୍ଜ ତଳେ, ସଞ୍ଜବେଳେ, ଚନ୍ଦ୍ର ଛାଇ ଖେଳେ ।
ଝିଲ୍‌ଝିଲିଆ ମହୁଆ ବାଆ, ମହକବାସ ବୋଲେ ॥ ୦ ॥

ଛାଇଛାଇକା ସେଇ ମୁହଁର ପାଶୋରା ଦନ ହସ,—
ବାଇଆ କରେ ମନଟା ମୋର ସପନସାଥୀ ଝୁରେ । ୧ ।

ଏଇମିତକା ମାଛିଅନ୍ଧାରେ ଖଚୁଆ ତରା ହସେ,
ଆମ ଦହିଙ୍କ ଓଢ଼ଣା ତଳି ଗୁପତ କଥା ସରେ । ୨ ।

ଦଣ୍ଡିକରେ ମଣ୍ଡିଦେଇ ଗଣ୍ଡେ ମଧୁଛାପ,
ସାତପର ସେ, କଣ ତ ସତେ ଜନ୍ମସାରା କାଳେ । ୩ ।

ମନର କଥା ଗୁମରେ ମନେ, ଉଡୁଅଁ ଘଣ୍ଟ ସାରେଁ,
କାଏ ସେ ଅଛୁ ଦରଦୀ ସାଥୀ କହିବ କା'ଅଗରେ । ୪ ।

---

( ୧୪୦ )

ଛୁଅନା ସୁନାଗୋପ୍ତ, ତୋରେ ଝୁରି,
ସରେ କଳା ଗୃନ୍ଧ ଲେ,
ଭଗାର ହସା ଅତ ମନ୍ଦ ।
(ଗୋପ୍ତ) ଭଗାର ହସା ଅତ ମନ୍ଦ ॥ ୦ ॥

ତୋ ଲଗି ସେ ବନମାଳିଆ,
ତୋ ଲଗି ବରଜ ଧୂଳିଆ ।
ତୋଲଗି ଫୁଙ୍କେ ସେ ବଇଁଶୀ ନିତ,
ଧରି ସୁର ଛନ୍ଦ ଲେ । ୧ ।

ତୋଲଗି ପୀତ-ଦୁକୁଳିଆ,
ତୋଲଗି କାଇଞ୍ଚ-ମାଳିଆ ।
ତୋଲଗି କୁଞ୍ଜବନେ, ଜଳୁଲେ ତ ପୀରତର ବନ୍ଧ ଲେ ।୨।

ତୋଲଗି କଦମ୍ବ-ମୂଳିଆ,
ତୋଲଗି ଗୋଧନ-ପାଳିଆ ।
ତୋଲଗି ରସରାଜ, ମାନତେଜ, କହେ କବିଚନ୍ଦ୍ର ଲେ । ୩ ।

---

( ୨୪୧ )

ଅରେ ମନୁଆଁ······

ଦଇବ ଦଉଡ଼ି ତୁ ଡ଼ ଗାଈ,
ଯେଣିକି ଦଉଡ଼ି ଟାଣେ ତେଣିକି ତୁ ଯାଇ ରେ ॥ ୦ ॥

ମନଙ୍କରେ ମନ ତୋର ରାଜସିଂହାସନ
ଭଇ ଭାଟିଲେଣି ତେଣେ ମୂଳ ମାଟି ମାନ,
ଛୁଞ୍ଚୁଡ଼ି ପଡ଼ିବ ଯେବେ ଯୋଗ ଏକା ନାହିଁ ରେ । ୧ ।

ଉପରେ ଗଉଳ ଡ଼ାକେ, ତଳେ ବହେ ଗଙ୍ଗା
ଦଦରା ତୋ ନାଆ ଖଣ୍ଡି, କାତ ପୁଣି ଭଙ୍ଗା ।
ତୋଡ଼ ମୁହେଁ ତେକମାର ଭଉଁରୀ ଖେଳଇ ରେ । ୨ ।

ନିଟ୍ ଘୁମ ମେଘୁଆରାତି, ବାଟ ଅନ୍ଧାରିଆ
ସାହାନାହିଁ ବାଟୋଇ ରେ, ଅତି ନିଘୁଟିଆ,
ମୁଖେ ରାମ-ପଦେଧ୍ୟାନ, ଗୁରୁ ନାମ ଧ୍ୟାୟୀରେ । ୩ ।

ଟଗନା ରେ ଲକ୍ଷ୍ୟଧାର, ଗୁରୁ ଭର ଟାଣ
ଧରମ-ଧାରଣା ଧର ଡାକି ଭଗବାନ,
ମେରୁ ପାଲଟିବ ଫୁଲ, ଦେଲେ ସେ ଅନାଇଁ ରେ । ୪ ।

---

( ୨୪୨ )

ଆ···ଜହ୍ନମାମୁଁ ଶରଗଶଶୀ,
ମୋ' କାହ୍ନୁ ହାତରେ ପଡ଼ରେ ଖସି ॥୦॥

ବାଆ ବହୁଲଣି ସୁଲୁ-ସୁଲିଆ,
ଧନମଣି ମୋର ବଡ଼ ହାଲିଆ ।
ଶୋଇ ପଡ଼ିବ ମୋ କୋଳରେ ପଶି,
ପିଠି ଗୁପୁଡ଼େଇ ଦେବ ଅଜିଁଷି ।୧।

କାଆ ବୁଦା ତଳେ ବୁଢ଼ା ବାଲୁଆ,
ରଡ଼ି ଛାଡ଼ିଲେଣି 'ହୁକ୍କେ-ହୁଆ' ।
ବାଇଆ ହାତୀକୁ ଡ଼ର ଲାଗୁଛି,
କେତେ ରଡ଼ୁଥାଇ ବାଲୁଆ ବସି ।୨।

---

( ୧୪୩ )

ମନଜାଣେ ଦଗାଦେଇ ରେ,
ବୁକୁ-ଫଟା ସାଥୀ ତାର-
ମୁଖ—ଫଟା ଶିଖି ନାହିଁ ରେ ।୦।

ମନା ନ ବୁଝଇ ମନ,
ସାର ଖାଲି ଅନୁମାନ,
ତୁଣ୍ଡ ବାଇଦରେ, ଦଏ ଦୁନିଆଁ ସେ ଦହରେ ।୧।

ଲୋକ ଯାହା ବୁଝେ ବୁଝୁ,
ଜଳଙ୍କ ନାଗରୀ ବାଜୁ,
ଅଖିମାର ଦେଖେ ଜଣେ-
ଉପରେ ଛ ଥାଇରେ ।୨।

---

( ୨୪୪ )

ହାଟୋଇରେ······
କିଏ ଜାଣେ ପସରା ଥୋ' ହାଟରେ ସରବ ।୦।

କାହିଁ ଯେବେ ଗହକର ପସନ୍ଦକୁ ଯାଏ
କାହିଁ ପୁଣି ହାଟୋଇର ଭାଉକୁ ନପାଏ,
ହାଟ-ଗଲା-ହସ-ମୁହେଁ ଲୁହ ତ ଝରବରେ ।୧।

ହାଟୋଇ, ଗହକି,—ଦୁଇ ମନ ତ ନାଆରି,
ଜଣେ ଦିଅ, ଜଣେ ନିଅ ଦୁଇ ଭାଡ଼ି ପାରି,
ଭରମ ସଲଖେ ସିନା ରାହା ସୁଧୁରବ ।୨।

———

( ୨୪୫ )

ବାଉଲା······କଥାକୁ ନମଣି ଅଣହୁତ
ହେତୁ ବଖି କଥାଏ ଶୁଣି ତ ।୦।

ଦେହ ଘରେ ମନଥାଏ, କଥା ସିନା ସତ
କାହାର କେହୁ ନୁହନ୍ତି ସଙ୍ଗାତ କି ମିତ ।୧।

ମୋର ମୋର ବୋଲି ଯାହା, ସେ ନୁହେଁ ତୋର ତ
ସରଗିଅ-ପିଣ୍ଡ ହେବ କାଲି ପୋଡ଼ି ଭୂତ ।୨।

ଯା' ଆସ ତ ସତ କଥା ଧନ ରାତି ପର
ମଝିରେ ମଶାଣି ଖାଲି ହସେ ଆଖିଠାର
ଚିହ୍ନାଇ ଦିଏ ସେ ଦେହ, ମନର ମହତ ।୩।

———

( ୨୪୭ )

ମନ ! ନାଅ ମଙ୍ଗଟି ଚାଣ କରଥା',
ଅମାନିଆଁ ପବନରେ ସହିବ କି ପାଲ-ଫଡା ।୦।

ଏ ଭବ ଘୋର ନଈ ଥଳ କୂଳ ଠା' ନାହିଁ
ଅଡଙ୍ଗା ଖାଇ ଖାଇ ଖଣ୍ଡିତ ଯାଏ ଧୋଇ
କାହିଁ ଗାଡ଼ିବୁ କିଲା ଭାବିଥା' ।୧।

ବହିବ ଅଙ୍କଗୁଣ ଉଡ଼ିଯିବ ତୋ ବାସ
ଛେଦି ନଥିବେ ପାଣ ମଙ୍ଗୁଆଳ ତୋ ଅଣ
ଠକି ଦେବେଟି ତାକୁ ଲଗିଥା' ।୨।

ମୁଠାକୁ ଟାଣି କର କାତ ଯାବୁଡ଼ି ଧର
ଅଜଣା ଗୋଲଚର ବାଟ ଭଗାର ତୋର
ଆଖି ମେଲାଇ ପଥ ଗୁଲୁଥା' ।୩।

ଉତ୍ତର କୋଣ ମାଡ଼ି ମେଘ ମାରୁଛି ଧାଡ଼ି
ବିଜୁଳି ଘଡଘଡ଼ି ପାଣି ଦେବ କଚାଡ଼ି
ଦଦରା ନାଅଟି ସମ୍ଭାଳଥା' ।୪।

ପାଖରେ ଦେଖୁ ଯାହା କେହି ନୋହିବେ ସାହା
ଏ ଘାଟର ଦୁଇ ବାହା ଛାଡ଼ିବେ ଖାଲି ଆହା
ଚକିବାହାକୁ ଅନୁସରଥା ।୫।

---

( ୧୪୭ )

ରାମ କହ, ଘନଶ୍ୟାମ କହ,
ମନ, ଦୁନିଆଁ ଗୋଲକଧନ୍ଦା ରେ,
ଚିଡ଼ିଆଖାନା ଦେଖ ମୂର୍ଖ ତୁ...
ରାମ ନାମ କର ଫନ୍ଦା ରେ ॥୦॥

ଧରମ ପାପ ସବୁ, ଯାହା କରି ଗଲୁ ତୁ
ଜନମ ଯାକ ରହେ ଭଣ୍ଡାରେ,
ଚିତ୍ରଗୁପ୍ତ ଖଡ଼ିକାର ରଖେ ଟିପି
ପାହୁ ଅଣା କରି ଖନ୍ଦା ରେ ।୧।

ତା' ନୟନୁ ଛପି ଯାଏ ନାହିଁ କିଛି
ଯା' କରୁ ଆଲୋକ ଅନ୍ଧାରେ,
ପର ତରୁଣୀ ହରି, ଛନ୍ଦମନ୍ଦ କରି
ପର ଧନେ ଯା' ଘର-ବନ୍ଧା ରେ ।୨।

ନିଜ ପତିରେ ଛଳି, ପରପୁରୁଷେ ଭଜି
ଯେ ରମଣୀ ମତି ଛନ୍ଦାରେ,
ଲଭଇ ପାପଫଳ, ମରଣ ପରେ ସେ
ଯମପୁରେ ଖାଏ ସେ ଖୁନ୍ଦା ରେ ।୩।

କାଣି ଦ'ଅଣାରେ, ବିକଇ ଦ'ହିଙ୍କା
କାଳାପୋଢା ଯା'ର ଫନ୍ଦା ରେ,
ଭୋଜନ ଲୋଭ ଦେଖାଇ ବଧେ ଯେହୁ
ନଡ଼ିବ ପାପ ଅପନିନ୍ଦା ରେ ।୪।

ଶମନ-ଦୂତ ଡାରେ, ମାରେ ଫିଙ୍କି କରୁ
କ୍ଷୁଧା ଜାଲରେ ଗୁଣ୍ଡା ରେ,
ନ୍ୟାୟ-ଦଣ୍ଡ ଧରି ଶାସକ ବସି ଯେବେ
ଲାଞ୍ଚ ମଣେ ପୁର ମଣ୍ଡା ରେ ।୫।

ରକ୍ଷକ ଯେବେ, ଭକ୍ଷକ ସାଜେ
ବୃକ୍ଷ ଖାଏ ନିଜ ଭଣ୍ଡାରେ,
ଭରତ ଫିଙ୍କେ ଶିର ଖଣ୍ଡଖଣ୍ଡ କରି
ଦଣ୍ଡିଲ ଯମ ଘର ଭେଣ୍ଡା ରେ ।୬।

ଚକ୍ଷଣ କଥା କହୁ ଉଣ୍ଟେ ଶପଇ ଯେ
ଶପଥ କରେ ଧରି ଧଣ୍ଡା ରେ,
ପାଳକ, ନିନ୍ଦୁକ, ଗୁପ୍ତଶତ୍ରୁ ଯେ
ଅମୃତରେ ବିଷ—ମଣ୍ଡାରେ
ଠକମକ ଉପତ ଉଇଲ କୁଣ୍ଡେ ପଡ଼ି
ନିଶିଦିନ ସେ ହୁଏ ସଣ୍ଢା ରେ ।୭।

———

( ୧୪୮ )

ମନରେ···ଯିବାକୁ ତୋ ଜନମଠା ପରି ?
ଯିବୁ ନାହିଁ କହିଲେ ତୁ    କିଏ ଶୁଣିବରେ ଧନ !
(ଏ) ଜଗର ତୋ ତୃଷ୍ଣା ପାଣିଗିରିରେ ।।୦।।

ଅସିରୁ କରିର କରି    ଡ଼ାକିଲେ ଯିବୁ ବାହାରି
କଠୋଳ କାହିଁକି ଅତି ତୋର ?
ଫୁଟିଲ ଫୁଲ ବେଳ    କିଏ ରହୁଛି ଖବର
ମଟିକାକ କଥାଟିକ ସାର ।

କାହାର କି କଳ୍ପ ମନେ- ହେଜ ତୁ ହାତଲାରେ
ସେତକି ତୋ ସାଇତା ପଣସ୍ୱରେ
ସାଥିକି ତୋ ସେଇ ଏକା ଭେଳାରେ । ୧ ।
ପଲଙ୍କ ସୁପ୍ରାନ୍ତ;-ଏ ତୋ ଧନ ଦଉଲତ
କାଲ୍‌କି ଆସି ମାଲିକ ହେବେ କେତେ ଭୂତ ।
କହ୍ନ ଫୁଲ ସଞ୍ଜେ ଫୁଟି ସକାଳେ ଝାଉଁଳେ ରେ
ଆସିଚୁ ତୁ, ଯିବୁ ଏତ ସାଥିରେ ।୨।

ସକାଳ ସୂରୁଯ ଆସି, ବାହୁଡ଼େ ସଞ୍ଜରେ
ବସନ୍ତ, ବରଷା ଆସି, ଲୁଚଇ ଖଞ୍ଜରେ
ଅସେ-ଯାଏ ଚକ ଘୂଟରେ ଖସି ପଡେ ଝସି ରେ
ଚଲିବାଠ ଦୁନିଆଠା ସାରି ।୩।

ପରକୁ ଆପଣାକର ମରେ ଫୁଲ ସୁକୁମାରୀ
ମହୁ ଲୁଟେ ମଦୁଆ ଭଅଁର,
ଚୈତ୍ର ମଳୟ ପବନ, ଦେଖାଏ ତା ବଡ଼ ପଣ
ବାସନ୍ତିକ ଲୁଟି ନେଇ ତାର
ପେଟ ଭରି ପଣେ ପୁଣି ଭୋର ।

ମରି ସେଇ ଫୁଲ ହେଲା କଅଁଳାମାଳାରେ
ନେଇ ନାହିଁ ଦେଇ ଜୀବ ଗନ୍ଧ-
(ଛାର) ଦିଅ ମୂଲ ଦଇବତ ଦେଲ୍ଲ ରେ ।୪।

( ୨୪୯ )

ନୂଆ ଖଡ଼ଖଡ଼ି ଲୁଆ ଗଜଡ଼ରେ, ଶରଧା
ବୋହୂ ନେଇଯିବେ କନକା ଗଡ଼ ଲୋ, ଶରଧା ।।୦।।

ସେ ଗଡ଼ ରାଇଜ ଅଛି ଗହନ ଲୋ, ଶରଧା
ବାପ ଘର ଆଉ ନକର ମନ ଲୋ, ଶରଧା ।୧।

ବୋହୂ ଭୁଆସୁଣୀ ଓଢ଼ଣା ଦବୁ, ଲୋ ଶରଧା,
ଶାଶୁ ଗୋଡ଼ତଳେ ଓଲଗି ହବୁ, ଲୋ ଶରଧା ।୨।

ଭେହ୍ଲେଇ ନଣନ୍ଦ ବଡ଼ ବଟୋଲି ଲୋ, ଶରଧା,
ତା' ମନ ମନାଇ ଯିବୁ ତୁ ଚଳି ଲୋ, ଶରଧା ।୩।

ଧାଣ୍ଡୁଣି ଚଣେ ତୁ କରବୁ ନାହିଁ ଲୋ ଶରଧା,
ଜଗି ଚଳିବୁ ଦେଢ଼ଶୂର ଭଇ ଲୋ, ଶରଧା
ସୁଖ ଦୁଃଖ ସବୁ ଯିବୁଟି ସହ ଲୋ, ଶରଧା ।୪।

---

( ୨୫୦ )

କାଳ ବଇତମ ହେଲା ରେ କୁମର ! ଯୋଗୀଥାଳ ଗଲା ଫାଟି,
ହାତ ବଢ଼ାଇଲ ଅପଣା ସୁନାକୁ, ସେ ପୁଣି ହୋଇଲା ମାଟି ।୧।

ରଜା ହେବେ ବୋଲି ହୁର ପଡ଼ିଥିଲା, ବଧାଢା ଭଅଣା ଅନ,
କିଏ ଜାଣିଥିଲା ଚଉଦ ବରଷ, ରାମ ପୁଣି ଯିବେ ବନ ? ।୨।

ରାମ, ଲଇଷଣ, ସୀତାଯା ଚଳିଲେ ପିନ୍ଧି ଜଟା ବଳକଳ,
ରଜାପୁଅ ପୁଣି ବନକୁ ଚମିଲେ, ଦୁଃଖେ କଟାଇଲେ କାଳ ।୩।

ସବୁଦନେ ସବୁ କଥା ରହିବ କି, କିଏ ସେ କରିବ ଠାଣ,
ଅଜ୍ଞ ରଜା କାଲି ବାଟର ଭିଖାରି, ରହିଛି କାହା ଗୁମାନ ।୪।

ଅଖି ବୁଲୁଥିଲେ ଚକ ବୁଲୁଥାଇ, ପଥର ପଡ଼ିଲେ ସହି,
ଅଚେଇ ଦନକୁ କୁଣିଅଁ ସଭଏଁ, କାହାର ନୁହେଁ ଏ ମହି ।୫।

---

( ୧୫୧ )

ସେ ନଫୁଲୀ ବୟସୀ କାଖରେ କଳସୀ
ଗତି ମନ୍ଥର ଭା'ର,
କିଏ ଜାଣିଥିଲା ପଡ଼ିଯିବ ଧରା
ଅଖି ସତେ ହେବ କାଳ ।୧।

କୋଇଲିଟା ପୁଣି, ବେଳକାଳ ଜାଣି
ଚୁଣ୍ଡା ଅମ୍ବ ଡାଳେ ଥାଇ,
କୁହୁ-କୁହୁ କହି ଜଳଜଳ ଗୁହିଁ
କରିଲା ଯେତକ ଠାହି ।୨।

ବାଉଳା ପବନ, ନ ହେଲା ମରଣ,
ଏତିକି ବେଳକୁ ଥିଲା,.
ବାସ ଚହଲାଇ ଭଣାର ଅଖିରେ
ବୟସ ଛନ୍ଦାଇ ଦେଲା ।୩।

---

( ୧୫୨ )

ଗୋଟେ ପଇସାରେ ବାବୁ ବାରମଜା ଖା-
ବାରମଜା ଖା' ବାବୁ ବାରମଜା ପା' ।୦।

ପାଦେ ପ୍ୟାରିସ୍ ଚପଲ୍- ମୁଖେ ବାଜୁଛି ପାଉଡ଼ର
ଉଡ଼େ ଫିନ୍ ଫିନ୍ ଶାଢ଼ୀ,
ସଞ୍ଜବେଳେ, ନଈ କୂଳେ, ହାଓ୍ୱା ଖାଇ ଯା—
ଲେଡ଼ି ଲଭ୍ ଭେଟ ଗୃହିଁଥିବେ, ଯା— ।୧।

ଝଙ୍କା ବରଗଛ ମୂଳେ ପ୍ଲିଡ଼ର ସାହେବ
ବାରମଜା ପାଠିରେ ପଢାଏ,
ମହକିଲକୁ ଗୃହିଁ ଧନ ଯାଏ ।
ନାଡ଼ି ଚିପୁଚିପୁ ଡାକ୍ତର ସାହେବ
ବାରମଜା ପାଠିରେ ପଢାଏ,
ରୋଗୀ ମାରି ଡାକ୍ତର ବୋଲାଏ ।୨।

---

( ୧୫୩ )

ମନୁଆଁ .........
କି ସୁଖ ଏ ଅଖି ଥାଇ ରେ, ମନୁଆ—
କି ଫଳ ଏ ଅଖି ଥାଇ,
ମେଲ ଅଖି ଛାଇ, ଅନ୍ଧ ହୁଏ ପଛି
ଛାଡିଲ ଲାହ ଝଗଇ ।୦।

ରାଜା ଦଶରଥ ଗୁରବସ୍ତୁ ଧେନ
ମଣ୍ଡିଥିଲେ ଧନେ ନିଜ ରାଜଧାନୀ
ଭଲା ବଡ଼ଦ ଧେଇ, ଆଖି ପଲକେ, ସବ-
ଗଲା ତ ସୁଖ ପଳାଇ ।୧।

ପୁଅ ପଣେ ଏକା ଲେଖା ସତ୍ୟବାନ
ଫିଟାଇଲା ଅନ୍ଧ ଜନଙ୍କ ନନ୍ଦନ
ସଞ୍ଜ ସକାଳ ସବୁ ଅନ୍ଧାର ଦୂର କରି
ଦଣ୍ଡୁଡ଼ି ଜାଳି ପଥ ଦେଖାଇ,
ଚଳାଏ ଅନ୍ଧ ଜନେ, ନଡ଼ଡ଼ି ଧରି ଏକା
ଆଗକୁ ପାଦ ମଣାଇ ।୨।

---

( ୧୫୪ )

ନଈ ତ ନଈ ହୋ ! ବାରବାଙ୍କ ନଈ,
ଆଗରେ ବାରହଳରେ ପଛରେ ଦାଢ଼ ମଈ ।
ଛଳି ଖେଳାଇବେ ହୋ, ଭରତ······
ସୀତସ୍ତ୍ରୀ ଦେବେ ରୋଇ ।୦।

"ଛୋଟା ଅମ୍ବ ଡାଳେ ଭଲା କୋଇଲ୍ଟା
ଡାକ ଦେଲା କୁହୁ କୁହୁ କୁହୁ
ବାସି ପାଇଛି ମୁଁ ସାରୁ ସାରୁ ରାଇ
ଫସର ଫାଟିଲା ଗୃହୁଁ ଗୃହୁଁ ।

ତାଙ୍କୁ ତାଅ ବୋଇଲ୍—
ଧାନ ବାହନ ସଜାଇ ନେଲୁ ତ,
ଯେତେ ମୁଁ ସେ ବୋହିଲ;
ବାପି ତୋରଣି ନ ଗୁଞିଲ-କଅଣ୍ଟି ମୁହେଁ ଗଲ ।୧।

(ଓଗ) ବାଢ଼ ଗଡ଼ଅକୁ ଗୁଡ଼ ମାର ଯାଇ
ଭାଙ୍ଗିଲ କଲମ ଲଣ୍ଠା,
ଦୋ'ପଖା ଚୂଲରେ କୁହୁଳା ମୁହାଁଇ
ଖଞ୍ଜି ଦେଇ କାଠି କୁଣ୍ଠା,
ଦେଲ ତଅଁଳ କଲମ ଭାଜି,
ହାଣ୍ଡିଶାଳେ ଥିଲ ବାସି କାଞ୍ଜି
ଉସୁଅଁ ଧାନକୁ ଗୁଜଳ ତାଡ଼ିଲ
ସଜ କୁଣ୍ଠା ତର ଅଜ ।୨।

ଇଂସାରେ ସାଇତ ଦହଡ଼ ଭାତ ସେ
ପତର ଟୋଡ଼ାଇ ଶରଧାରେ,
ଧନ ପାଇଁ ଧର, ଦାଣ୍ଡ ତାଟି କଲ
ଗଲ ବେଗେ ହୁଡ଼ ଧାରେ ଧାରେ
ତାକୁ ଜଣା ନ ଥିଲ—
ବାଟେ ଭେଟ ସାଜକାର ପିଲ ତ
କାହିଁ ଯାଉ ବୋଇଲ ?
ତାକୁ ଅଖିଠାର ମାଇଲ—ଅଡ଼େ ଅଡ଼େ ଗୁହିଁଲ ।୩।

(ଓଗ) ସଙ୍ଗାତେ ! କାହିଁ ଯିବ କି ?
ମୋ ଅଡ଼କୁ ଅବେ ଗୁହିଁ ଯିବ କି ?

ତୁମକୁ ଦେଖିଲା ଦିନୁ,
ରାତି ପାହାନ୍ତିଆ ସପନ ଦେଖୁଛି
ପାଶୋର ନଯାଏ ମନୁ ।
ଦାରପଣି ବସା ରଙ୍ଗ ବଟୁଆ
ଅଣ୍ଟିରେ ଲାଗିଚି ଗୁଡି ଫେନ୍ଦା,
ଛତି ସୁନାଖିଲ୍ ଦାନ୍ତରେ ମାଇଚି
ମୁଣ୍ଡରେ ଚକ୍କଣି ସରୁ ସୁନ୍ଦା ।
ସେ ତ ସବୁଛି ଛତରା ପଣେ
ନାଇଁ ଖାଇରେ ତା’ପର କଣେ ।
ଜବାବ ନ ଦେଇ, ଅଡ଼ୁଆ ହେଇ
ସଲଖିଲା ଧାନ ବଣେ ।୪।

(ଡଗ) "ବୋଇଲା,—ରସରସିଆ, ପରମ ରସିଆ
ତୋ’ପର ରସିଆ ନାଇଁ ରେ ।
ଥାଳଙ୍କ ପାଣିରେ ବୁଡ଼ ମରୁଥିଲି
ତୋହର ପୀରତି ପାଇଁ ରେ ।"
ଲାଜ ନାଇଁରେ ଛତରା ଟୋକା,
ମୋର ଅଳଡ଼ା ପାଟିକି ଲେଖା ?
ନୁଖୁରା ମୁଣ୍ଡରେ ତାଧୋଇ ଚୂଆରେ
ହଡ଼ମୁଣ୍ଡ ବାରସ୍ତାଇ ଚଳେ,
ଓଦା ଖଦ ଢାନି ଚପୁଡ଼ି ଚପୁଡ଼ି
ବସିବାକୁ ଧଡ଼ ଗଲାବେଳେ ।
ହେଲା ଅମାନଆଁ ଗୋଡ଼ ବଳା ତ
ଝୁଣ୍ଟୁ ଝୁଣ୍ଟୁ ଖସିଲା ।
ଆଖି ଆଖି ମିଶିଗଲା ତ—ଭାରି ଲାଜ ମାଡ଼ିଲା ।୫।

(ଡଗ) "ମେଘ ପକେଇଲା ଝୁପୁରୁ ଝୁପୁରୁ
ଆଷାଢ଼ ସଇଲା ଆସି ।
ଧାର ଶିରବଣେ ବେଙ୍‌ଗଣ ସାର
ଧାଡ଼ କରି କଲ୍ ବସି ।"
କହୁଥିଲ—ସାବଳୀ ଭଉଁସ ବାସୀ
ଟିକିଏ ବାପଘର ବୁଲି ଆସି—
ଗହ୍ମା ପୂନେଇଁକି ଜଣ୍ଟଦେଇ ଧନ
କହୁଲେ ମୁରୁକି ହସି ।
"ଭାତ ଖାଇସାର, ତା'କାନି ପଣତେ
ମୁହଁ ପୋଛୁ ଧନ କହେ ହସି,
ଅନା ଲୋ ସୁନ୍ଦରୀ, କଳାକୁଲି କେତେ
ଲହଡ଼ା ମାରୁଛି ଭସିଭସି
ଦେଖ ଗଡ଼ି ଏଥର,
ସୁନା ହରଡ଼ଫାଳିଆ ହାର ଲୋ,
ତୋତେ ମାନିବ ଭଲ ।
ମନଥିଲା ତୋହର-ଧନମାଳି ମୋହର ।୬।

---

( ୧୪୪ )

ଲଭନାହିଁ ଶଶୀଲେଖା,
ହସେ ଗୋଟିଗୋଟି ତାରା,
ଉଷାର କପୋଳ ଭାଲେ,
ଫାଟି ଛ ନାହିଁ ସିନ୍ଦୂର ।୦।

ପଲ୍ଲବ ଗୁଣ୍ଠନେ, ଲଜଦାଇ ସେଫାଳି ଢଳି,
ଶେଷ ଚୁମ୍ବନ ତା'ର, ଦେଇ, ଦେଇ ନାହିଁ ପରି ।୧।

ଘୁମ-ଘୋର କମଳିନୀ, ଅବଧି ହେବରେ ଯାମିନୀ,
ଜଳି ନାହିଁ ଦୀପଶିଖା-ଗୁନ୍ଥି ନାହିଁ ତ ମାଳା ।୨।

ଆଶାରେ ଆଶାରେ ସତେ, ଅନ୍ଧାର ନିଶି ତ ବିତେ
ନୟନଟି ଖୋଲି ଦେଖେ, ବିରହର ନୀର ଧାରା ।୩।

---

( ୧୪୫ )

ବାଟୋଇ,
ବାଟବଣା ହୁଅ ନାହିଁ ରେ ।
ମାଆ-ମାଟି କୋଳେ ବାହୁଡ଼ି ଆସ ତୁ
ରହିଛି ସେ ପଥ ଚାହିଁ ।୦।

ନ ପଚାର ପଛେ ବାଟୋଇ ରେ ତାକୁ
ଅଭିମାନ ତାର ନାହିଁ,
କୁପୁତ୍ର ଜଗତେ ଥିଲେ ଥିବେ ସିନା
କୁମାତା ଦେଖିଛୁ କାହିଁ ? ।୧।

ସାଇ ଗୃହତଳେ ଜନ୍ମ କାରଣରେ
ନିହଲେ ଥିଲୁ ତୁ ଶୋଇ,
କେତେ ତୋତେ ସତେ ଗେଲ କରିଥିଲେ
ଏ ମାଟିର ଅଙ୍ଗା ଆଈ ।୨।

ବସ୍ତୁର କହୁଛ           ବଢ଼ିଲୁ, ପଢ଼ିଲୁ
ମଣିଷ ହେଲୁ ଯା'ଭୁହୁ,
କାହା ଲାଗି ତୋର           ସଂସାର, ଘରର
କେଉଁ ଯେତେ-ଭାତ ଖାଇ ।୩।

ଭଲଠାରୁ ଭଲ           ଯାହା ଲୋଡ଼ା କଲୁ
ଯୋଗାଡ଼େ ତୋ ଗାଁ ଭୁଇଁ,
ସଲତେ ନୋହଲେ           ତାଙ୍କେ ଭୁଲ ତୋର
ଜୀବନ ନାଟିକା ସେହୁ ।୪।

---

( ୧୪୭ )

ଶେଜ ଦେଜ ହଙ୍କାଳ ରେ ହେଲଣି ଜରୁର
ସାଙ୍ଗସାଥୀ ଗୋଠ ଘେନି ହୋଇଲେଣି ଠୁଳ
ମୋ ଘନ କାଳିଆରେ,
ଉଠରେ ଲବଣୀ, ଖୀର, ସର—ଜଞ୍ଜାଳିଆ ।୧।

ଶ୍ରୀମୁଖ ପଖାଳ ଏବଁ ଦନ୍ତ-ମଧ୍ୟରେ
ଅରୁଣ ଉଦୟେ ଆଜ ନିଦ୍ରା ଅବଧି ରେ
ମୋ ବାଙ୍କ ଚୂଳିଆ ରେ,
ଶିଂଘା ବେଣୁ ଘେନିଯିବୁ କାନନ-ମେଳିଆ ।୨।

ଶମ୍ଭୁ ଅଳେ କସ୍ତୁରୀ ଗୁଞ୍ଜା ବନମାଳୀ
ଚରମାର ଡେଇଁଲେଣି ବାଛୁରୀ ହମ୍ବାଳ
ମୋ ବ୍ରଜ—ଧୂଳିଆ ରେ,
ସାଜିଦେବ ବେଶ, ଅମ୍ବ କାଇଁମାଳିଆ ।୩

ଅମାନଅଁ ପଣେ ଗ୍ଲୁଡ଼ ଆସ ଘନଶ୍ୟାମ !
ଦୁଆରେ ଡାକନ୍ତି ପରା ଭାଇ ବଳରାମ
ମୋ ବନମାଳିଆ ରେ,
ଗୋଧନ ଘେନି ତୁ ଯିଢ଼ି ଯମୁନା କୂଳିଆ ।୪।

ପହୁଡ଼ ଛେଜଲେ କାହ୍ନୁ ଶୁଣି ମାତା ବାଣୀ
ନାଚଲେ ସଖାଏ ସଙ୍ଗେ ପାଇ ନୀଳମଣି
ସେ ନୀପମୂଳିଆ ରେ,
ହେଜ୍ କବଣଶୀ ଛାଡ଼ି ପାଦ ମଞ୍ଜୀଳିଆ ।୫।

---

( ୧୪୭ )

ଇନ୍ଦ୍ରରଜା !
ବରଷ ପାଣି ଝରଝର ।
ବରଷ ପାଉଁଛ, ଖା'ଲେ ବରଷ-ନଈ ନାଳେ ।
ଡେଇଁ ଗୁଳିବ ପାଣିହୁଡ଼ ବାଡ଼ ବାଲରେ ।୧୦।

ବରଷ ମାଘୂଅଣୀ ହେବ ସୁନାଗୁଷରେ
ଗୃଷୀ ବୁଣିବ ଧାନ ହେଲେ ମେଷ ମାସରେ
ଅଷାଢ଼, ଶିରବଣ-ବହୁଡ଼ା ବେଜ୍ଷଣି,
ଛୁଇଁ'ଦେ ଫରଫର ଭୋବୁଅ ଅଗିଣେରେ
କାର୍ତ୍ତିକେ ବରଷି ଦେ' ଲହଡ଼ାଇ ଫୁଲ୍ ରେ ।୧।
(ସୁନାଘର)

---

( ୧୪୮ )

ଚଇତ ବଇଶାଖ ଖରାମାସ
ଲଳିତାକୁ ଷେଠେ ଭରଗୃଷ ।
ଧାନ ମଳି, ମୁଗ ବୁଣି, ଚଷା ବାନ୍ଧେ ବାସ ରେ,
ତା'ମନ ହସହସ ।୧।

ଜ୍ୟେଷ୍ଠ ଅଷାଢ଼ ମାସେ ଘନ
ଖରଡ଼ି ବତ୍ରୁସି ଧାନ ବୁଣ
ବାଆଳରେ ବଦା ଦେବୁ, ଚଷାଭାଇ ଶୁଣ ରେ,
ଦେଖିବୁ ତା'ଗୁଣ ।୨।

ଶ୍ରାବଣ ଭଦ୍ରୁଅ ଦୁଇମାସେ
ମଙ୍କାଭାଙ୍ଗ ଧାନ ରୁଆ ଶେଷେ
ଭେଦେଇ ଢୋବ ଲଗାଇ, ଚଷାପୁଅ ହସେ ରେ,
ଲକ୍ଷେ ପେଟ ପୋଷେ ।୩।

ଅଶିଣ କାର୍ତ୍ତିକ ମାସ ଦଇଠା
ଲାଗିଥିବ ଲଘୁ ଧାନ କଟା.
ଶାରଦ କ୍ଷେତେ ଭୁ ବୁଠ, ବରଗୁଡ଼ ଛଟାରେ
ପିଙ୍ଗ ପାଠ, ମଠା ।୪।

ମଗୁଶୀର ମାସ ଆସି ହେଲା
ଶାଳ ଘରେ ଗୁଡ଼ ମଦ୍ଦକଲା
ଅମାର ପୂରାଇ ଗୃହୀ, ମନ ଉଲସିଲା ରେ
ବଣଭୋଜି କଲା ।୫।

ମାଘ, ଫଗୁଣ ଏ ମାସ ଦୁଇ
ପିଆଜ, ମକା ଦେଇ ଖୁଆଇ
ଝାଇଁମୁଗ, ହରଡ଼ର, ଡାଲି ସୀମା ନାହିଁରେ,
ପେଟ ତୋର କାହିଁ ।୬।

ମାଟି ମା'ଟି. ଢାଳିଛ ଯେ ସୁନା
ଚାଷୀ ଭାଇ ! ନଷ୍ଟ ହୁଅନା
ବେଶୀ କର ଚାଷ, ଯିବ ପେଟର ଭାବନା ରେ,
ଫଳିବଟି ସୁନା ।୭।

---

( ୧୪୯ )

ସରଗଲା, ସରଗଲା
ଫିରିଙ୍ଗି ବେପାରୀ କସ ନ ଭଲ କି
ମାନ ମହତ ବୁଡ଼ିଲା ରେ,
ଖରା କାକର ଖାଇ,
ଆମ ଅରଜନ ନେଲା ବୋହି ।୧।

ଗାଆଁରେ କଙ୍କାଳ ମାଳ
ଗଜା-ଭେଣ୍ଡା ପେଟ- ଭୋକ ଅତୁର କି
କାଳ ହୋଇଲା ଅକାଳ ରେ
ଭେଠା କୁକୁର ସବି,
ବୁଲି ମାଗିଲେ ବାରଦୁଆର ।୨।

ସୁନା, ରୁପା ଘରୁ ଗଲା,
ଗିଲ୍‌ଟି ରସରେ ଭେଳିକି ଭଲା ତ
ସବୁ ଲୁଣି କର ନେଲା କି,
ଚଜ୍ଞମୁହାଁ ମେଲା-
ନାଲି ଅଖି, ଗୁବୁକ ଗୁଲି ।୩।

ନିଜ ପହଣ୍ଡରେ ବସି,
ଭୁଣ୍ଡ ଫିଟାଇବା ମୁଣ୍ଡ କି ଅଛୁ ରେ
ଦଣ୍ଡ ଭଳାପାଣି ଫାଶି ରେ,
ଅମ ବଣ ପାହାଡ଼
ଝିପ ଦେଲେ ତ ଭାଙ୍ଗିବ ହାଡ଼ ରେ ।୪।

---

( ୧୪୦ )

କି କାଳ ଏ ହେଲା ସତେ,
ନଅଙ୍କ କି ଅସିଲା ହୋ ।
ଜୀଅନ୍ତା ମଣିଷ, ମଡ଼ାକୁ ବଳାନ୍ତି
ନଡ଼ା ବିନା ଛଡ଼ା ହଡ଼ା ଦଶିଲା ।୦।

ମୁଠି ଭାଖ ଥାଳ, ମୋଟି ଶାଗ ଅଳ
ନମିଳଲା ପାଞ୍ଚକୋଶ ବୁଲିଲେ,
ସୁନା କିଅଟରେ ବାଲି ଚହଗଲା,
ଖଡ଼ା, ସାରୁନଡ଼ା ସପନ ହେଲା ।୧।

ଝରଝର ଲୁହ ଆଖିରୁ ଝରାଇ
ପେଟ ପାଇଁ ବାରଦୁଆର ବୁଲି,
କଅଁଳା ପିଲାକୁ ଶଙ୍କ ମାଟି ଦେଲେ
ମାଆ ପଣିଆ ତା ଚଲିକି ଦେଲା ।୨।

---

( ୧୬୧ )

ପୁଅ—ଚତୁରୀ ରାଧିକା ଗୋଇ
ଯମୁନା ନଈକି ଯାଏ ଗାଧୋଇ ଲୋ
ଯାଏ ଗାଧୋଇ ଲୋ-
ବଇଁଶୀରେ ହେଲା ବାଇ ।୧।

ଝିଅ—ହଠ କର କାହ୍ନୁ ଯାଏ,
ନଈ ଗାଧୁଆକୁ ଅନାଇଁ ଥାଏ ଲୋ
ଅନାଇଁ ଥାଏ ଲୋ-
କପଟ କଲଠାଠାଏ ।୨।

ପୁଅ—ସେ ତ ନନ୍ଦ ରଜା ପୁଅ,
ତାକୁ ଅପୁରୁବ କି ସୁନ୍ଦର ଝିଅ ଲୋ
ସୁନ୍ଦର ଝିଅ ଲୋ
ରାଧା ଗୁଣଟି ନକହ ।୩।

ଝିଅ—ସେ ତ ଘର ଭୁଆସୁଣୀ,
ନାଆଁ ଧର ତାର କେ ଡାକିବ ପୁଣି,
ଡାକିବ ପୁଣି ଲୋ
ନନ୍ଦ ପୁଅ ଜାଣେ ଗୁଣି ।୪।

ପୁଅ—ଯା'ମନ ଯହିଁକି ରସେ,
ପୋକଶୁଙ୍ଘା ଫୁଲେ ଭଅଁର ବସେ
ଭଅଁର ବସେ ଲୋ
କାହାକୁ ଗୁଣିଅ କା ଦୋଷେ ।୫।

ଝିଅ—ପୁରୁଷ ଭଅଁର ଜାତି,
ମଧୁ ଥିଲା ଯାକ ସେ ସୁଖ ପାଆନ୍ତି,
ସୁଖ ପାଆନ୍ତି ଲୋ-
ମଧୁଗଲେ ଉଡ଼ିଯା'ନ୍ତି ।୬।

---

( ୧୫୨ )

କଥାରେ କହନ୍ତି ନାହିଁ ? କାଈଫୁଲ
ଆଖି ଘୂରୁଥିଲେ ଚକ୍ର ଘୂରୁଥାଏ,
ବୁଲି ଯାଉଥାଏ ମଣ୍ଡି ।୧।

ବୁଲି ଏଣେ ତେଣେ କାହିଁ, କାଈଫୁଲ
ବରଷକେ ଆଜ ଆସିଛୁ ରଜ ଲୋ,
ପହିଲି ବରଷା ନେଇ ।୨।

ବସୁଧା ଶୋଷେଇ ଥିଲା, କାଈଫୁଲ
କାଳି ମେଘ କୋଳେ ବିଜୁଳି ଚହଟି,
ତୁଣ୍ଡେ ଧାର ପାଣି ଦେଲା ।୩।

ଡାକିଲା କୁକୁଡ଼ା କାଉ, କାଈଫୁଲ
ଫସର ଫାଟିଲା—ଫୁକିଆ ଉଇଁଲା
ଧର ଧ ନ ସନ୍ଧେ ଆଉ ।୪।

ସହଳ ଗାଧୁଅ ସାର, ଜାଈଫୁଲ
ନୂଆ ଶାଢ଼ୀ ପିନ୍ଧି ସଜବାଜ ହେଲେ
ରଜକୁ ମାନ କୁମାରୀ ।୫।

ହିଅ ନ ଛୁଇଁବେ ଭୂଇଁ, ଜାଈଫୁଲ
ଚୁଲଣ୍ଟ କଠଉ, ଚପଲ କି ଅବା,
ଗୁଆ ଖୋଳପାକୁ ନାଇ ।୬।

ରଜମୁଢ଼ି, ପୋଡ଼ପିଠା, ଜାଈଫୁଲ
ବରଷକ ଯାଏ ପାଶୋର ନ ଯିବ,
ସତରେ, ସେ ଭାର ମିଠା ।୭।

ତିନି ଦିନର ମଉଜ, ଜାଈଫୁଲ
ଭୂଇଁ ଦାଳନ ତ ପହୁଞ୍ଚି ଗଲାଣି,
ସରିଗଲା ସଜବାଜ ।୮।

---

( ୧୫୩ )

ଶାଶୁ—ଏଡ଼ିକି ଗେଲବସର ଲୋ,
ଲୁଚା ଖଣ୍ଡିକ ତୁ ଦ'ଖଣ୍ଡ ନକରୁ
ଭଲା ବାପ ମାଆ ତୋର ଲୋ ।୧।

ବୋହୂ—ଏ ଘରର ବୋହୂ ମୁହିଁ ଗୋ
ପୋଇଲି ତ ନୁହେଁ ଥୋଇଲ ସମାନ,
ମଣୁଛ ମୋତେ କିପାଇଁ ଗୋ ।୨।

ଶାଶୁ—ମୁଁ କି ଗୃହକରଣୀ ତୋର ଲୋ,
ରନ୍ଧାବଢ଼ାଠାରୁ ବାସିଘର ଝଡ଼ା—
ପାଇଛି ଭାଗ ମୋହର ଲୋ ।୩।

ବୋହୂ—ନକଲେ ପଡ଼େ ନଜର ଗୋ
ଅଲଣା-ଲୁଣିଆ, ପୋଡ଼ା, ଦରସିଝା,
ଅରୁଚ୍ୟ ହେଲଣି ମୋର ଗୋ ।୪।

ଶାଶୁ—ବଡ଼ି ବଡ଼ି କେତେ କହୁ ଲୋ,
ପୁଅ ଥିଲେ, ପଣେ ତୋପର ସ୍ନେହପଣ୍ଡି,
ଭାଲ ହେବେ ମୋର ବୋହୂ ଲୋ ।୫।

ବୋହୂ—ଗୃହରେ ନଥାଇ ନଡ଼ା ଗୋ,
ପିଠି ଅରକ୍ଷିତ, ତୁଣ୍ଡ ନରେନ୍ଦ୍ର ତ
କଥାଟି ଦୁନିଆ ଛଡ଼ା ଗୋ ।୬।

ଆସନ୍ତୁ ଘରକୁ ସିଏ ଗୋ,
ପଡ଼ କାଟି ଯେବେ ତଡ଼ ନ ଦେଇଛୁ,
ଦେଖିବ ରଖିବ କିଏ ଗୋ । ୭ ।

———

( ୨୫୪ )

ରଖା ଭାଇରେ ।
ମୋ ବୋଲ ତୁ କର, ( ଅରେ । )
ତୋ' ମନଟି ଦମ୍ଭ ଥିଲେ,
ଅମୂର ଅଙ୍ଗ କି ଡ଼ର ? ।୧

ବାଲି ଭୂଇଁ ପନ୍ତାରେ ତୁ—
ଫୁଟା' ସୁନାଫୁଲ,
କିଏ ଦେବ ରେ ସତେ ତୋର,
ଫାଲ ଚୋପାର ମୂଲ ॥
ତୁ ପରପୋଷା- ତୁ ପର ପୋଷା
ଏ ତୋର ନିଶା—ତୋଳା ପରଘର ।୨।

———

( ୧୫୫ )

ଏବେ ତ ଜଣାଗଲା ଠାଣି,—ପାରବା ପଣି ।୦।
ଗୃହ ଧରବାରେ ମନ,
କରଚ ସତେ ବାମନ
ଏବେ ଭାଙ୍ଗିଲା ଗରବ ଗୁମାନ ।୧।
ଫୁଲେ କାଠପର ଲାଗି,
ବସିଥିଲା ଘରଭାଙ୍ଗି,
(ଏବେ) ସହିଲା ନାହିଁତ ଧରମ ।୨।
ପରଲାଗି ଖୋଳ ଖାତ
ଗଲା ଆପଣା ମହତ,
ତୁମଅଁ ଦେଖିଲା ତ ଢନ ।୩।
ବଡ଼େ ଗଲେ ଖଇ ଖାଇ,
ସାନ ଦେଖାନ୍ତି ବଡ଼ାଇ,
ନାହିଁ କି ମୁଖେ ଲାଜ ସରମ ।୪।

———

( ୧୫୭ )

ବନ୍ଧୁ, କିଏ ତୋତେ ଦେବ ଆହାର,
(ଆଜ) କିଏ ଦେବ ତୋତେ ଆହାର ?
ମାଆ କୋଳଛଡ଼ା ଛେଳଜଣ୍ଡ ଛୁଆ ରେ
ତୁ ପରା ଦୁନିଆ ବାହାର ।୦।

ମାଆ ହାତ ପରା ବନ୍ଧ କରନ୍ତି
ବଙ୍ଗ ସେ ପାଖେ ବିହାର,
ଗଳା କାଟି ତେଣେ, ମଥାରେ ମାରୁଛ
ଅନ୍ଧ ପାହାର ପାହାର
ଘୃତରେ ବସି ତୁ କ୍ଷୀର ଖାଇ ମନ—
କୁହୁଚ଼ରେ ବାରୁ । ଯାହାର ।୧।

ଏଂଡ଼ ଜଳଜଳା । ଭାଇରେ ଭାଇରେ
କଳି କରିବାକୁ ତିଆର୍,
ଭଲଲୋକପଣେ ସଜତୁଣୀ ପୁଏ
ମାଡ଼ ବସିଲେଣି ଦୁଆର ।୨।

କୁଳ ନାଶ ବେଳେ ଘୋଡ଼ା ମୁହାଁ କାଠ
କଥା ଫଳିଲା କି କାହାର,
ଗୋଲାମୀ ପାଇଁ କି, କୁମ୍ଭୀର କାନ୍ଦଣା ।
( ତେଣେ ) ପଡ଼ଣା ବଜାଏ ପାହାର ।୩।

———

( ୧୫୭ )

ଚନାଚୂର ଗରମ ଦୋ' ଆନା ।୦।
ଖାଏ ଖପରବାଲି ଢାଲି
ଖାଏ ଶଙ୍କର ଭୋଲି,
ବୃନ୍ଦାବନ୍ ମେ ମୁରଲି ଧୂନ କର୍
ଖାଏ ସୁନ୍ଦର କାହ୍ନା ।୧।
ଏ ଚନା-ଦୋ' ଦୋ' ଅନା
ମଜା ଲୁଟାଙ୍କେ ଖାନା
ବାବୁ ଖାଏ-ରଙ୍ଗ ଜଡ଼ାଏ
ସାଇକଲ୍ ପର୍ ଚଢ଼୍ ଯାନା ।୨।
ଚନା ମେରା ସାଥ୍ଲେ ଚଲେ
ବାବୁ ସେ ସମଝାନା ।୩।

———

( ୧୫୮ )

ମନୁଅଁ.........
ମଞ୍ଜି ବନେ ଗଛ କାହିଁ ?
ବାହନ ବୁଣା ପାଇଁକି ଢୋର—
ଲୋଡ଼ା ପାଣି, ପାଗ, ଭୁଇଁ ।୦।
ଏକା ହାତେ କି ବାଜବ ତାଳି,
ଦେଖିଚ୍ କାହିଁ କହ ତ ଭଲି
ଯୋଡ଼ାକୁ ଯୋଡ଼ା ସବୁ ତ ନୁହେଁ ରେ
ଦେ' ତୁ ହାତ ମିଳାଇ ।୧।

"ଅନ୍ନ ବସ୍ତ୍ରନେ ହଂସହାନୀ
ଯୋଗ ସାଧିବୁ ତାହା ଦେଶ"
ସୁମର ତୁ ଭଗବତ ବାଣୀ
ସହଯୋଗେ ଚଷ ଭୂଇଁ ରେ ।୨।

ମାଟି ମାଆର ମହତ ପାଇଁ
ଲଢ଼ୁଛୁ ତୋର ଜୁଆନ ଭାଇ
ବଳବପୁ ତାକୁ ଯୋଗାଇ ଦେ'ରେ
ଠାଣି ହେଉ ତାହା ବୁଲ ।୩।

———

( ୨୪୯ )

ପାଞ୍ଚମନ ଠୁଳ କର ବାଉଳା ରେ
ପାଞ୍ଚମନ ଠୁଳ କର,
ଚୁଣ୍ଟ, ବଡ଼ା, ଛତା, କୁଠା ନ ମିଶିଲେ
କାହୁଁ ତୋଳା ହେବ ଘର ? ।୦।

ଟେନା ଟେନା ଭାଇ ଭାଗ ବାଣ୍ଟିଲେ
ହାଡ଼ ଖାଇଯାଏ ଭୂଇଁ,
ମୁଠିଏ ମୁଠିଏ ଧୂଳି ବନ୍ଧକୁ
ତରେ ଖରସୁଆ ନଈ ।
ସହଯୋଗ ଭେଳା ଚଳ,
ଏଇ କାଅଣ୍ଟିଆ ଅକାଳ ନଈ ତୁ
ମନ ସୁଖେ ହେବୁ ପାର ।୧।

ଛିପିବାକୁ ତଣ୍ଟି ଝାଙ୍କ ବସିଛୁ
ଦାଉକୁ କଲାବଜାରି,
ମେଣ୍ଟ ବାନ୍ଧ ଜଗ ବେଉଷା ବଣିଜ
ସହଯୋଗ ସ୍ପୃହା ଧର ।
ଛୋହର ତୁ ସାହୁକାର,
ବେଲହୁଁ ଉରକ୍ଷ ସୁଧ ଅସଲକୁ
ଗଣି, ନ ବୁଡ଼ାଅ ଘର ।୨।

———

( ୧୭୦ )

ମନୁଅଁ ......ହସ କାନ୍ଦ ମିଶା ଏ ଦୁନିଅଁ ।
ଦୁନିଅଁ ଯାହାକୁ ବୋଲ
ଦ'ନିଅଁରେ ଗଢ଼ା ସେ —
ଦୁଇ ପିଠି ଜଳେ ଛାର ନିଅଁ ।।୦।।

ଏଇ ମାଟି ଖେଳ ଘରେ,
ହସି କିଏ ଦୋଳି ଖେଳେ ।
ଚିହ୍ନ ନ କଲେ ସଙ୍ଗେ କାର,
କିଏ ଅଶାନ୍ତି ଅଶାର
ଛୋଲେ ମେଘ କାନ୍ତି ଘର
ମରଚୀକା ସାଥୀ ଶର କା'ର
ଅଶା କା'ର ବାଲି ବନ୍ଧ ଦିଅ ।୧।

ପୀରତି ସାଥୀରେ କିଏ—
ରଙ୍ଗେ ଆଖି ଘେରରେ,
ସାଥୀହରା କିଏ ମରେ ଝୁରି
କିଏ ମାଗେ, କିଏ ଫେଙ୍ଗେ,
କିଏ ଧଏ ଅନୁରାଗେ
ଫୁଲ ଶେଜ କା'ର କଣ୍ଟା ଭରି
ତୁମେ ଝୁରି ମର ଯା'ରେ-
ମନ ଦେଇଛି ମେ କା'ରେ
ଅତୀତ କେ ଭୁଲେ,
କିଏ ସ୍ମୃତିର ଡାକୁଅଛିରେ ।୨।

---

( ୧୭୧ )

କଳା କଜଳ ଆଖି ତାର,
ଶୋଇଲେ ଚେଇଁଲେ ଖାଲି
ଢାଳ ହେଲା ମୋର ଲୋ ।୦।

ଅମାନିଆ ପୋଡ଼ା ବନ୍ଧୁ,
ହାତ ସତେ ଥିବ ନାହିଁ
ମନ ମୃନ ଏକା କରି
ମାରିଥିଲା ଗାର ଲୋ ।୧।

ଜାଳିବାକୁ ଏକା ମୋତେ
ଗଢ଼ିଥିଲା ପରା ସତେ,
ବନାଇଁ ମୋ ଅଖିକି ସେ
ଲୁହ ଗନ୍ତାଘର ଲୋ ।୨।

ମନରୁ ପୋଛୁବ ବୋଲି,
କେତେଥର ମୁଁ ଶପଥ କଲି,
ଲୁଲକାଳି ଖେଳେ ଆସି
ଖୋଜି ବୁକୁ ତଳ ଲୋ ।୩।

( ୨୭୨ )

ବାଦଲ ବୋଇତ ଭାସିଲା ସଖି,
ଭେଦେଇ ଜହ୍ନ ତ୍ରସିଲା ।
କାଅଁଶ ମାଳରେ ଶାରଦ ଧାନର
ମଥାରେ ଶିଶା ଧଉଳା ।୦।

କଣ୍ଟେ ଦେଇ ଧନ ବିଦେଶେ ରହିଲା
ବରଷା କାଳ ବିତିଲା,
ଖାଇବେ କାଅଁଫୁଟି, ବାସ ଯାଏ ଚହଟି
ଛାତିରେ ଶର ଦାଗି ଦେଲା ଲୋ ।୧।

ଏଇ ଶରଦରେ, ଗୋପ ନଗ୍ରରେ
କାହ୍ନୁ ଖେଳିଥିଲା ରାସ,
ବରଜ ଗୁଆଳୀ ଷୋଳ ସହସର
ରସେ ଦେଇଥିଲେ ହାସ,
ଫୁଟିଲା କଦମ୍ବ ଗୁହିଁ,
ମୋର, ପିଣ୍ଡରେ ପରାଣ ନାହିଁ
ଶ୍ରାବଣ ମାସ, ବରଷ ସରିଲା
ରାତି ଉଜାଗର ଗଲା ଲୋ ।୨।

( ୧୭୩ )

ସପନ ଦେଖିଲି ସହି      ଆଖି ମେଲି ଦେଲି ଚାହିଁ
ମଥାନରେ ଜଳୁଥିଲା ଜୁଆ,
ନିଦଭଙ୍ଗା ସାରା ରାତି      ଦୁହୁଁଦୁହୁଁ ଥରେ ଛାତି
ମେଘ ତଳେ ହସୁଛି ଫୁକିଆ ।
ମନୋଚୋର ସେ ନାଗର
ଆଖିପତା ତଳେ ମୋର
ଦରହସି ଆସି ହେଲା ସତେ ଠିଆ ଲୋ,
ତା'ମୁଖ ଚନ୍ଦରଉଦଅ । ୧ ।

ସତେ କି କରିବ ହର      ବସି ଆସି ପୁରେ ମୋର
ଛୁଇଁ ଛୁଇଁ ଦେବ ସେ ମୋ ହିଆ,
ପାହାନ୍ତି ସପନ ସତ-      ଫଳେ ପରା ସତେ ମିତ ।
ଅନୁଭବ ହେବ ମୋର ନୂଆ ଲୋ—
ଆସିବ କି ଯଉଣ ବନ୍ଧୁଆ ? ।୨।

---

( ୧୭୪ )

ଭଲ ଜଣେ ତୁ ଅଟେ ନୂଆନାଗର,
ଭଲ ରଜନୀ ଜାଳି ଜାଳି ଜାଗର । ୦ ।
ଏ ମୋର ମଲ୍ଲୀମାଳା      ମିଛରେ ବାସିହେଲା
ସଜଡ଼ା ଖିଲିପାନ-      ବଅର୍ଥେ ମୋର ଗଲା ।
ମୁଖ ଦେଖାଉ ଅସି ପୁଣି ଅଗର । ୧ ।

କାହା ପ୍ରବଣେ ରହ            ମୋ କଥା ମନେ ନାହିଁ
ଅସୁଲୁ ଝଲ ଝଲ            ସାରି ରାତ୍ର ପ୍ରହାର
ପା' ଯା' ଶଢ଼ିଲ ତୋରେ ରସସାଗର । ୨ ।

---

( ୧୬୫ )

କେଲୁଣୀ— ବାଡ଼ି ବାଇଗଣ ପୋକା ରେ ନାଗର,
ତୋହପର ଫଟା ରସିକ ଝୋଙ୍କା—ନାଗର ରେ
ମୋ ଚୋଡ଼ ଛଳକୁ ଲେଖା । ୧ ।

କେଳା— ଫୁଲୁ ଫୁଲୁ ବେଙ୍ଗ ଗୁଲି, ଲୋ ନାଗରୀ
(ତୋ) ପାନଖିଆ ଓଠ ନାହାଲବେଲି—ନାଗରୀ ଲୋ
ଦେଖି ମୁଁ ଲାଜରେ ମଲି । ୨ ।

କେଲୁଣୀ— ପଖାଳ ଭାତରେ ଘିଅ, ତୁ ନାଗର
ଅସୁଲୁ ନାଗର ଦେଖିଲେ ତୋରେ—ନାଗରରେ
କେରି କେରି ଫଟା ଦନ୍ତ । ୩ ।

କେଳା— ଦରପଣ ହାତ ପଙ୍ଖା, ଲୋ ନାଗରୀ
ପାରଲ୍ଲ ବାଳରେ ମହଣ ମଖା—ନାଗରୀ ଲୋ
ପିଠିର କୁଜ ସଲଖା । ୪ ।

---

( ୧୬୬ )

ଖାଲି, ଖାଲି ସପନ ଛାୟା
ଏ ତୋ ସୁନ୍ଦର କାୟା
ଭାଇ—ଏ ତୋ' ସୁନ୍ଦର କାୟା । ୦ ।

ଧନ ଦଉଲତ ସଞ୍ଚ ଯା' ତୁ
ଏ ତୋର ସାଥୀ ହୁନଅ ।
ଅନ୍ତି ମୃତ ଥରେ ଭାବୁ ନାହୁଁ ବାବୁ,
ସବୁ ପର ଦ'ଦନଅଁ ।
ଭାଇ —ଏ ତୋ' ସୁନ୍ଦର କାୟା । ୧ ।

କେ' ତୋର ସଙ୍ଗୀ—କେ' ତୋର ସାଥୀ ?
ସଙ୍ଗେ ନେବୁ ତୁ କ ଶେଜ ସୁପାତ ରେ,
ଆସିଛୁ ଏକା ତୁ ଯିବୁ ଏକା ତ
ଯିବେ ନାହିଁ କେହ୍ନ ମିତ ସଙ୍ଗାତ ।
ଧନ ଗଲ ଆସି ସଞ୍ଚ ହେଲ ତ
ଭରମ ନା, ମିଛ ମାୟା,
ଭାଇ—ଏ ତୋ' ସୁନ୍ଦର କାୟା । ୨ ।

---

( ୧୭୭ )

ନାମ ଭଜନ କର ମନ—
କେତେ ଦନ ଦେଖିବୁ ତୁ ମାୟାର ସପନ ରେ । ୦ ।
ଫୁଲର ଜୀବନ ତୋର ଘଡ଼କର ହସ,
ଛିଡ଼ ଝଡ଼ଯିବ, ଯେବେ ବହେ ଅଣଗୁଣ ।
ଶେଜାଇ ଶୋଉଛୁ କେତେ କୁସୁମ ଯେମନ (ଧନ) । ୧ ।
କୁଣ୍ଠା ପକାଇ ତୁ ମୋହ ହେଉ ମନେ ମନେ,
ତୋ ପାଇଁ ନ ସବୁ ମିଛ ପାଞ୍ଚ ଅଛ ଜଣେ ରେ ।
ପାଛୁଡ଼ଲେ ଜଣାଯିବ ଅଗାଡ଼ ବର୍ତ୍ତ' ଧାନ । ୨ ।

---

( ୧୬୮ )

ଛଡେ଼ ହୁଲୁଁ ମୋ କୁହାର—ମୁଁ ଛ ଜଣାଏଁ କୁହାର
ଦେଇ ଜାଣୁ, ନେଇ ଜାଣୁ ଲହୁରୂପ ଚୋର ॥ ୦ ॥

ଘାଟରେ ଲଭ ତୁ ବଷ    ମୁଖେ ମାଖୁ ମଧୁହସ
ଗଢୁ ଯାହା, ଭାଙ୍ଗୁ ତାହା ଭଲ କାରିଗର ରେ । ୧ ।

ଏ ହାତେ ବଢ଼ାଇ ଦେଉ    ସେ ହାତେ ତୁ ସାଧୁ ଦାଉ
ଟିଭା ଛଟଲ, ଟିତାକଠା ବେଉସା ତୋ ସାର ରେ । ୨ ।

ମୁହଁ ମିଠା କଥା ଲଟେ    ଲୁଚ ଛ ଛରତ ଖେଳେ
ଆହାର ପରଶି, ଜାଣୁ ବଢାଇ ପାହାର ଟେ । ୩ ।

ଦେଖାଇ ତୁ ନେଭ ହର    ଦେଖି ନାହିଁ କେ ତୋ'ପର
ଚୂଲରେ ବସାଇ ତଳେ କାଢୁଥାଉ ଚେର ରେ । ୪ ।

---

( ୧୬୯ )

ପୁରୁଷ— ଉଡ଼ିଗଲା ଗେଣ୍ଡାଳିଆ,
ମୁଁ ବୋଲଇଁ, ଉଡ଼ିଗଲା ଗେଣ୍ଡାଳିଆ ।
ରହ ସଙ୍ଗାତୁଣୀ କଣି ଆଣିଛି
ତୋ ଲାଗି ବଣୁବାଳିଆ ॥୧॥

ସ୍ତ୍ରୀ— ଗୁତର ଦେଖାଉ କେତେ,
ମୁଁ ବୋଲଇଁ, ଗୁତର ଦେଖାଉ କେତେ ?
ବଣୁବାଳିଆ ମୁଁ ଢେନାଟୁ କେତେ
ଅଣ୍ଟାସୂତା ପରଯନ୍ତେ ।୨।

ପୁରୁଷ—　ପାଚିଲା ନାହାଲବେଲ
　　ମୁଁ ବୋଲୁଇଁ, ପାଚିଲା ନାହାଲବେଲ ।
　ବାଡ ମଙ୍ଗଳାଙ୍କୁ ସହଣି କଲି,
　　ତୋ ମୁହଁ ଦେଖିବା ବୋଲି ।୩।

ସ୍ତ୍ରୀ—　ଶିମିଳ ଫୁଲ ଫୁଟିଲା,
　　ମୁଁ ବୋଲଇଁ, ଶିମିଳ ଫୁଲ ଫୁଟିଲା ।
　ଏତେ ଦିନ୍‌ଠାରୁ କୋଉଠି ଥିଲୁ
　　ମରଣ ତୋତେ ନୋହିଲା ।୦।

---

( ୧୭୦ )

ଭଜ ମନ ହେ । ଭଜ ଭବତ ଭାତ ।
ସଢ଼ସାଢ଼ ଚଳିଯାଏ ସେ ଡଣ୍ଟିରେ
　ବାଜିଥିଲେ ଗୁଆ ଘିଅର ହାତ ।୦।

ହଜ ପଚେ ନାଲି ବଗଡ଼ା,
　ନୋହିଥାଇ ମନୁଷ-ଛଡ଼ା
ଥାଉ ପଚେ ଖଡ଼ା ଅଣି ତା'ସାଥିଙ୍କୁ
　ପେଜ ବୋଳି ନଣେ ମାରନ୍ତି ହାତ ।୧।

ଲେମ୍ବୁ ଯେବେ ଚପୁଡ଼ା ହେବ,
　ମଜା ତାର ଜଗୁଙ୍କ ଯିବ,
ତୋଲେ ମାରଦେଇ, ଘୁଙ୍ଗୁଡ଼ି ବଜାଇ
　ପଞ୍ଝଆ ଭୂଇଁରେ ମାରବା ଭାତ ।୨।

ପେଙ୍କ ଗଲା ହେଉ ନ ହେଉ
ଘରବାଲୀ ପରଶି ଦେଉ
ଅନ୍ଧାର ଭଣର, ଆଲୁଅ ସେ ମୋର
ଆଲୁଅରେ ହୁଡ଼ା ବଳଦ ନାଥ ।୩।

ହେଲ୍ ବୋଲ୍ ଭେଙ୍କ ବାଜିଲା,
ଭବ ପଟେ ପଦ ଯୋଖିଲୁ,
ବଣିଆଁ ପୁଟୁଲି ଥାଏ ଭଲି ଭଲି
ଯାଠି ମଧୁ ପୁଣି ଚରେଇଥା ଉ ।୪।

— — —

( ୧୭୨ )

ଶାଖା ପତ୍ରରେ ବଣର ଶୁଆକୁ ।
ଭଙ୍ଗା ବସା ଦେଇଯିବୁ କାହାକୁ ? ॥୦॥

ଜନମଣ୍ଟା ଖଟି, ଝଞ୍ଜି କୁଣ୍ଟା କାଠି,
ଡାଳେ ବନାଇଲୁ ଯାହାକୁ ।
ପରଦେଶେ ଯିବୁ, ମୁହୁର୍ତ୍ତ ବହିବୁ
ସତେ କି'ରେ ଅଜ ତାହାକୁ ।୧।

ପତର ଛୁଇରେ, ବାସ ବଟଥିଲୁ
ଶୀତ ଖରା, ମେଘ ସାହାକୁ ।
ଦଣ୍ଡକରେ ଜଡ଼, ଯିବୁ କାହିଁ ଛାଡ଼ି
ପବନେ ହଲଇ ବାହାକୁ ।୨।

ଏକା ଯାଉ ଉଡ଼ି, ସାଥୀଙ୍କ ନ ଲୋଡ଼ି
ପୁଅ, ଝିଅ, ବାପ, ମାଆଙ୍କୁ
ଭବାନନ୍ଦ ବୋଲେ, ଉଡ଼ିଗଲୁ କି'ରେ
ହାର ଅଣରୂପ ବାଆଙ୍କୁ ।୬।

---

( ୧୭୨ )

ଅପାଶୋରି ତୁ ରେ ଧନ !
ସତ କହୁଛୁ ପଢ଼ାଇ ଛୋର ଆନ ॥୦।

ମନେ ଅଛୁ ଘନ ରାତିରେ
ଜାଙ୍କ ରଖିଥାଉ ଛାତିରେ
ଛଳ ଚଢ଼କ ଭ୍ରାନ୍ତିରେ
ମୁଦ ଦେଇଥାଉ ପଣ୍ଣ ତୋ' ନୟନ ।୧।

ଜଜାଗରେ ପାତେ ଲଗି ରେ
ଶଶି ହୁଏ ପରବାସୀ ରେ
ଇନ୍ଦ୍ରଲପାତିଠା ଆସି
ଡାକେ ଶେଜ ତେଜ ବୋଲ୍ ଘନଘନ । ୨ ।

ଦିନେ ଗୋ ସବୁଠ ପୁଲ୍‌ନେ
ବଣ-ଛପା ବଞ୍ଚିତ ଘନେ
ତନୁ ଛୁଇଁ ଜୀବଧନ !
ମୋରେ କହୁଛୁ ନୋହୁବୁ ଭଲଭଲ ।୩।

ସପନେ ତୁ ଅସୁ ନୀତ ରେ
ମୋ ନୟନେ ଜାଲ ବତୀ ରେ
ଅସ ବୋଲି ପାଶେ ଗଲେ
ଧରା ନଦେଇ ଲୁଚୁ ତୁ କ୍ଷଣେକ୍ଷଣ ।୩।

ତୋ ଅଗମ ଅନୁସର ରେ
ଦେଲେ ମୁଁ କର ପସାର ରେ
ଅଖି ନୀର ଯାଏ ଭରି
ଏ ମୋ ଅଞ୍ଜଳିରେ ସତେ ଅନୁଦିନ ।୪।

କବିଚନ୍ଦ୍ର ବୋଲେ ସଖି ରେ
ହୁର ହେଲ ଦେଖାଦେଖି ରେ
ଛବି ତୋ ରଖିଛୁ ଲେଖି
ଜୀବ ଯିବାଯାଏ ଥିବ ମନେ, ମନ ।୨।

———

( ୧୭୩ )

ଗୁହାରି ଶୁଣ ମାଆ, ଯୁଗେ ଯୁଗେ ହୁଅ ସାହା
ପାଆ ତଳରେ ଧେନ ଜୁହାର ॥ ୦ ॥
କ୍ଷୀର ଉପରେ ମାଆ ଖଣ୍ଡ ବରଷି ଯାଉ
ସୁନା ତମ୍ଭୋକଢ଼ିରେ ବାସ ପରଶି ଯାଉ
ଅମାର ପୂରିଥାଉ ନିଅଣ୍ଟ ବାଧା ଯାଉ
ନବାଧୁ ଦାନା ଜନା ଦାଉ ମା ।
ଅଢ଼ଅଖିରେ ଲେ- ଅନାଇଁ ଦେଲେ ଲେ
ଏ ଦୁଃଖ ଯୁର କେତେ ମାତର ? ।୧।

ଏ ତୋର ତନ୍ତ୍ରୀପୁଅ-          ଭେଟୁଛୁ ମାଅ ନାଅ
ପାଅ ତଳରେ କଳାହିମିଶ୍ରି ।
ନଛାତେ ମନାଇଁ ଲୋ-          ଢାଳ ଗମାଇଁ ଲୋ
ସୂତା ଖିଅକୁ ହେଲା ପାତର ।୨।

ଗାଆଁ କୁମ୍ଭାର ଭାଇ          ପାଦେ ଭେଟିବା ପାଇଁ
ଆଣିଛୁ ଗଢ଼ି ଘଡ଼ା କଳସ,
ଚମାର ଭାଇ ଲୋ          ତୋ ଭେଟି ପାଇଁଲୋ
ଆଣିଛୁ ବାଙ୍କଚୁଟି ସରସ ।୩।

ବଜାଯୁ କବରୁ ତୁ          ଭଗାର ମାରବୁ ତୁ
ଦୁଃଖରୁ ଢାରବୁ ତୁ          ଶୁଣିବୁ ଗୁହାର ତୁ
( ଗୁହାର ଶୁଣିବୁ ତୁ, ମାଅଲୋ- )
ଏତିକି ଜଣାକରୁଁ ମାତର ।୪।

---

( ୧୭୪ )

ଘୁଡ଼, ଅଞ୍ଚଳ ଘୁଡ଼ ହଟିଅ
ତୋଟେ ଜୁହାରରେ ନଟକୁଟିଅ ।୦।

ମୁଁ ଯେ ଯମୁନା ପାଣିରେ ଥାଏଁ .
କଏ 'ରାଧା ହର ବାଧା',—ଗାଏ,
ମୁଁ ଯେ ଉରଛେ ତେରଛୁ ଗୃହେଁ,
ଏଣେ, ଅକାଶତେ କାଏ-
ପାଦ ଠାଣି ମୋର ପାଣିରେ ହାବୁଡ଼ା ଦଏ ।

(ରଗ) କୂଳ ଗୁଣ୍ଡି କୁଳବତୀ ପଦ୍ମ ନାଭ
ଅକୂଳେ ଭସାଇ ଯାଏ,
କେତେଣେ, ଅତି ଅସହାଣୀ, ବରଜ ରମଣୀ
ମୋ ନାମେ ଲଗାଏ ବଟିଆ ।୧।

ବନ୍ଧୁ ଭଙ୍ଗିଠି ତୁ ନନ୍ଦ ଗୁଠି,
ଜାଣୁନାହୁଁ ଏ ଯମୁନା ତଠି,
କେବଳ ବୁଢ଼େ ଲଗାଇଛୁ ନାଠି,
ଏ ମୋ ଓଢ଼ା ଶାଢ଼ୀ ସତେ କେତେ ସମ୍ଭାଳିବ
ନବ ଯଉବନ ଛଠି,
କେ ଦେଖିଲେ ହେଲେ କଳଙ୍କିନୀ ବୋଲି
ବଜାରେ ବସିବ ହାଠି,
ଦେଲି ମୋରଣ ପସଣ-କହ୍ନାଇ ବେଗେ ତୁ
ଘରେ ଫେର ପୀତପଟିଆ ।୨।

ହେଲି ନେହୁରା, ନାଯୁମଦେଲି,
ତେବେ ନଗଲା, ଧୋ ନଠି-ବେଲି,
ହେଜୁ ନାହୁଁ, ପରନାରୀ ବୋଲି,
କେତେ ନାଆଁ ଧରୁ ମୋର ରାଧା ରାଧା ବୋଲି
ଚୁଲୁରେ ବସାଉ ଭାଲି,
ନାତ ନାଶି ଅଧେ, ଘର ପର କରି
କୁଞ୍ଜବନେ ଯାଏଁ ଚାଲି ।
ତେବେ କେ ନମାନୁ ବାଠି, ଘାଠି, ହାଠି
ମହତ ସାରୁ ତୁ ନଟିଆ ।୩।

---

( ୧୭୫ )

କି ଦେଖିଲି ଯୋଡ଼ା ଆଖି ମୋର ।
ଜୀବ ଥିଲେ ଦେବ କି ସେ ମନରୁ ପାଶୋର ରେ ।୦।

ଏକେ ତା ନୟନ କଳା- ତା'ପରେ ଅଞ୍ଜନ ବୋଳା
ସୁନା ତନୁ ମନେ କଲି ଘର
ସେ ଭୂରୁ ବଙ୍କିମ ଗ୍ଲାଇ,
ବାନ୍ଧିଲି କି ଡୋର ରେ ।୧।

ଅଧରେ ଅଳକା ତା ଭଲି ଗ୍ଳଣ୍ଡରେ ଗଲ୍‌ଟି ଗଲି
ଭଲି ସେ ଗଢ଼ିଛି କାରଗର
ଚଲ୍‌ଗୁଲି ବଜାଇ ସେ
ପୟର ନୂପୁର ।୨।

———

( ୧୭୬ )

ଯେ ଯା'ର ସେ ତ ତା'ର
ବୁଝିଅଛି ଏ ବାରବାର ।୦।

ଯେ ଫୁଲ ଫୁଟେ ଯା'ଲାଗି
ସେ ତ ତା'ର କଣ୍ଠହାର ।୧।

ଶଶୀ ହୁଏ ନଭେ ଗୃହେଁ
କୁମୁଦିନୀ କର୍ ସାର ରେ,
ଗୃନ୍ଦନୀ ସଞ୍ଚ ସାରେ
କାନନେ ବୁଲ ଚକୋର ।୨।

ନ ଫୁଟିଲେ ମୁଖେ ଭାଷା
ମନ କହେ କେ' କାହାର,
ବାଛନ୍ତି ଏକ ଜୋ ଯୁଗ, ତୁ
ମନକୁ ମନ ପଶୁର ।୩।

———

( ୧୭୭ )

ସାଦା ସଦା ମଲମ୍,
ଭାରି ଚକ୍‌ଚକ୍ ଚକ୍‌ମକ୍ ॥୦॥

କଳା କରେ ଗୋରି- ଗୋରି କରେ ଢୋରି ରେ
ଭଡ଼ି ଭଡ଼ି ଗୃଲେ ସେ- ସତେ ସାଦା ସାରି ରେ
ଗୋରି ଅଣ୍ଟାରି କରେ ଛକ୍‌ପକ୍ ଛକ୍‌ପକ୍ ।୧।

ଏ ଯେ ଧଳା ଗୁଣ୍ଡି ହେବ ଯେବେ ମଣ୍ଡି
ହେଜ ପଢ଼େ ହୁଣ୍ଡି ମନ ଦେବ ଭଣ୍ଡି
ହବ ପରଦେଶୀ ହେବ ଝକ୍‌ମକ୍ ଝକ୍‌ମକ୍ ।୨।

ଏଇ ମଲମ ମାଖି ମାରିଦେଲେ ଆଖି
ରହିଯିବ ଲାଖି- ଆଖି ରଖି ସାକ୍ଷୀ
ହୁଏ ହେବ ଖାଲି ଫୁରି ଠକ୍‌ଠକ୍ ଠକ୍‌ଠକ୍ ।୩।

———

( ୧୭୮ )

ରସିକା ।

ତୁମ୍ଭ ବିନା ମୋର ଜୀବ ଅଧିକା ।୦।

ତୁମ୍ଭ ମୋର ଶିଳାମୁଚଳୀ,
ଲକ୍ଷ୍ମୀ ଲକ୍ଷ୍ମି କପାଳୀଭୂଲ
କୁଣ୍ଡିଅ ଦେହକୁ ଦଉଡ଼ିଅ ଖଟ
ଅନୁକୂଳ କାଳ ବଡାଳ ଡକା ।୧।

ତୁମ୍ଭ ମୋର ଫଟା ହାଣ୍ଡିଆ ।
ଅପନ୍ତରା ବଧା ବାଣ୍ଡିଆ ।
ଛବଛ ଭୁଛରେ ବାଇଗଣ ପୋଡ଼ା
ପୋଡ଼ା ଘାଆପରେ ଚୂନ ପିଟୀକା ।୨।

ତୁମ୍ଭ ମୋର ହାତର କଡ଼ି,
ଅଭରଣ ଗୋଡ଼କୁ ବେଢ଼ି,
ଅଶୀବରଷର ନବ ଯଉବନୀ
ପାଙ୍କଲ ବାଳରେ ମନ୍ଦମମଖା ।୩।

ତୁମ୍ଭ ମୋର ଜଁଅସ ଶତ
ପାହାନ୍ତିଆ ଜହ୍ନର ଜ୍ୟୋଛ
ସନ୍ତୁଅ ଘଇତା ହଡିଅ ସୁଆଗୀ
ଭଙ୍ଗା ଦେଉଳକୁ ରଙ୍ଗା ପତାକା ।୪।

———

( ୧୯୦ )

କି ବୋଲି, କୁହୁକୁ ବୋଲି, କହୁ କୋଇଲି,
ଗାଇଲୁ କୁଞ୍ଜେ ॥୦॥

ଆସିଲୁ, ଆମ୍ବ-ବଉଳ, ପଳାଶ ଫୁଲୁ,
ମଳୟ ପବନ ।
ଅବଳା, କି ଦୋଷ କଲା, ଯୁବତୀ ଯୋଡ଼ିଲୁ,
ବସନ୍ତ ରଙ୍ଗେ ।୧।

ଜମୁନା, କାଳିଆ ସୁନା, କଲିଗି ମନା,
ତୁ ଆସିବାରୁ ।
ଟେଲା ତୁଟିଲେ ମଧୁର ସ୍ବରେ, ମରମ ଫାଟେ,
ମୁରଲୀ ଗୁଞ୍ଜେ ।୨।

ତୁ କଳା, ସେ କଳା,-କଳା, ମିଶି ଦ'କଳା,
ହେଲେ ବଇରୀ ।
ସେ କଳା, ପବନ ଲାଗି, ପୀକ କି ଯୋଗୀ,
ଗରବ ଗଞ୍ଜେ । ୩ ।

ଏ ମୋର, ଘରକରଣା, ଓଢ଼ଣା ଝଣା,
ଭୁଲିଲି ସବୁ ।
ଏକା ଟେଲା' କୁହୁକ ଡାକ, ମାରେ ଚଡ଼କ,
ଏ ମଧୁ ସଙ୍ଗେ । ୪ ।

---

( ୧୯୧ )

ବନ୍ଧୁଅ ଲାଗି ମୁଁ ଶେଜ ବଛାଇଲି
ଗୁନ୍ଥିଲି କୁସୁମ ମାଳା,
ବଳିଆ ସାଜିଲି, ପ୍ରଦୀପ ଜାଳିଲି
ନଇଲେ ଚିକ୍‌ଣ କଳା,
ସଖି, ଶ୍ୟାମଘନ ନଇଲେ ମୋର,
ଚୋର କର ମନ ସେ ମନ ଚୋର ।୧।

ରସର ସାଗର, ରସିକ—ନାଗର,
ନ ଦେଖିଲେ ଏତେ ଦିନେ,
ଶାଶୁ ନଣନ୍ଦରେ ବଞ୍ଚନା କରି ମୁଁ
ଅଇଲି ଗହନ ବନେ ।
ଦେ' ଦେ' ସଖି, ଲିଭାଇ ଦେ' ଗୋ
ଚନ୍ଦନ, କର୍ପୂର, ସୁବାସ ପନ୍ନଗ
ଯମୁନାର ନୀରେ ଭସାଇ ଦେ' ଗୋ ।୨।

———

( ୧୯୨ )

ବିନା ବାରି ବରଷେ,
ଫୁଟେ କି ଶିଖିରେ ଫୁଲ,
ବିନା ବସନ୍ତେ ମିତ,
ଗାଏ କି କଳା କୋକିଳ ? ।୦।

ଧାର ବରଷା ଝରେ,
ଚାତକୀ ଆଶା ପୂରେ,
ବିନା ଶଶୀ-ମୟୂଖ,
ବଞ୍ଚେ କି ହୃଦ ଚକୋର ? ।୧।

ଥାଉ ବାସ ସରସ
ସଜ ସଞ୍ଜୁଅ ହାସ
ବିନା ଅଳି ସରାଗ କେ'
ବୁଝେ ଫୁଲର ମୂଲ ? ।୨।

ନୀତ—ଝୁରା ସୋହାଗ
ପ୍ରୀତ—ଭରା ସରାଗ
ବିନା ନୟନ ଛଟା,
କେ' ଜାଣେ ପ୍ରୀତ ବେଭାର ? ।୩।

ଫୁଟେ କୋଟି କି କୋଟି
ତାରା ଫୁଲ ଉକୁଟି
ବିନା ଶରତ ଜହ୍ନ,
ମେଘ କି ହେବେ ସୁନ୍ଦର ? ।୪।

---

( ୧୯୩ )

ଜାଣିଥିଲି ସତେ ତୁ ମୋ ପରଶ ସୁନାଟି ॥୦।
ମଥାସାର ଅଳକା ମଣିଥିଲି ତୁ ଏକା
ଛୁଟିଗଲୁ ରତନ ଟିକାଟି ।
ସୁଧାଂଶୁର ଚନ୍ଦ୍ରମା ପରଶି ମୁଖ ସୀମା
କଳଙ୍କ ବିଷେ ଘାରେ ମଥାଟି । ୧ ।

କି ସୁନ୍ଦର ଗୋଲାପ          ବାସନ୍ଧଏ ଅମାପ
ନ ଜାଣେ ଦେଇଛନ୍ତି କାଣ୍ଟ ଛାଟି ।
ମଣି ଭୋଳେ ଅମୃତ          ଚାଖିଥିଲି ମୁଁ ଚଉ
କେ ଜାଣେ ରଖିଛି ବିଷ ବାଟି ।୨।

ଥିଲି କେତେ ଅଜାଣ          ଦେଲୁ ଯା ଗୁଳୁଞ୍ଜନ
ଫିଟିଲା ମୋ ନୟନ କବାଟି ।
ଧଡ଼େ ହୀରା କଣିଟି          ଥିଲି ଭୋଳେ ମଣିଟି
ଚୂନା କଲୁ ସୁନାର ଘରଟି ।୩।

ସୁଧାଫଳ ଦେଖାଇ          ଦେଲୁ ବିଷ ଚଖାଇ
ସାକ୍ଷୀ ଶଶି, ଗଗନ ତାରାଟି ।
କହିଚନ୍ଦ୍ର ଜୀବନେ          ଅନୁଭବ ଏ ଧନେ
କୁହାର ତୋ ତରଳ କଥାଟି ।୪।

———

( ୧୯୪ )

ଆଖିଟି ଜାଣେ, ଆଖି ମନ କଥା ।
ଆଖିରେ ଲଖିଲେ ଆଖି, କହେ କେତେ ବ୍ୟଥା ।୦।

ଆଖି ହସେ—ଆଖି କାନ୍ଦେ
ଆଖି ଆଖି ବାଦ ସାଧେ
ଆଖିଲାଗି ଆଖି ଝୁରେ, ସାକ୍ଷୀ ଆଖି ପତା ।୧।

ଆଖିଟି ଫୁଟାଏ ଆଖି
ଆଖିଟି ଫିଟାଏ ଆଖି
ଅନ୍ତର ବାହାର ତୃପ୍ତି, କରେ ହୃଦ୍ଦେହଟା ।୨।

ସୁନ୍ଦର ପଣତର ଢେଉ
ଆଖି ଏ ପ୍ରାଣ ଚୁମ୍ବକ
ଯେତେ ଦୂରକୁ ଯାଏ, ଆଖି ଟାଣେ ମନ, ମଥା ।୩।

ଆଖିଟି ଭରେ କାରୁଣ
ପରାଣେ ଦିଏ ପରାଣ
ଦୂରରୁ ସୁଖ ପରଶ, ଦିଏ ଆଖି କଥା ।୪।

ଆଖିର ଚୁଲଚେ ଆଖି
ମରମ ବେଦନା ମାଗି
ଆଖି ଆଖି ଚୁମ୍ବ ଏକା, ପୀରତି କରଥା ।୫।

ଅନ୍ଧାର ଅଲୋକ ନାହିଁ
ଆଖି ଖଦ୍ୟୋତ ଆଖି ସ୍ଥିର
ଆଖି ଚୁହିଁ କବରେ, ଦିଏ ଜୀବନଟା ।୬।

———

( ୧୯୪ )

ସହିଲେ ! ମନା କରଦେବୁ ସତେ ତାକୁ,
ବେଲବୁଡ଼େ ନ ଅସିବ ଆଉ ଏ ତୁଠକୁ ଲୋ,
ଏମିତ ସେ ନ ଚୁହିଁବ ଫେର ମୋ ଅଡ଼କୁ ଲୋ ।୦।

ଘୁଡକ ପାଣିରେ ଥାଏଁ—କଳା ଆଖି ଦୂରୁଁ ଚୁହେଁ
ଓଦା କାନି କେତେ ଭଲ—ଜଗିବ କାହାକୁ ଲୋ ? ।୧।

ପାଣି ତଳେ ଲୁଚି ରହୁ—କାନି ଟାଣି କରେ ଟାହୁ,
ଫିଟାଇ ନ କହେ କାଁ—ମନଟି କାହାକୁ ଲୋ ।୨।

ଥିଲେ ସେ ଗୋ ଅରକ୍‌ଲେ—ଭରି କଳସି କୋ ଢ଼ଳେ,
ଅଜଥରେ ଯାଏଁ ପୁଣି—ପାଣି ଆଣିବାକୁ ଲୋ ।୩।

ହଟହଟା ହେବ କେତେ—ପଚୁରନ୍ତୁ ତାଙ୍କୁ ସତେ,
ତା'ମନେ କି ଅଛି, ତାର—ଅଣ କି କଥାକୁ ଲୋ ।୪।

---

( ୧୯୭ )

ନେଳିଆ ମେଘରେ ଗୁନ୍ଦ,
ବନ୍ଧୁ ବାନ୍ଧଣୀର ଭଲ ପସନ୍ଦ ଲୋ,
ସବୁରି ମନ ଆନନ୍ଦ ।୧।

ଗଳାକୁ ସୁନ୍ଦର ମାଳ,
ଭରି ପୋଖରୀକି ପଦ୍ମଦଆ ସିନା,
ଫୁଟା ରଙ୍ଗକଇଁ ଫୁଲ ।୨।

ମଥାକୁ ପସନ୍ଦ ବେଣ,
ଦେଖା ସୁନ୍ଦରକୁ ପଚୁରୁଛନ୍ତି କିଏ
ପଳାଶରେ କାହିଁ ବାସ ? ।୩।

ଶୀତକୁ ସାଇତା କନ୍ଥା,
ଗ୍ରୀଷ୍ମ କାଳେ ଗୋଳା ଚନ୍ଦନ ଗୋ,
ଝରି ବରଷାକୁ ଛତା ।୪।

ଥିଲେ ଥାଉ ପଛେ ଖୁଣ,
ସୁନା ତାଙ୍କେ ଥିଲେ କଉଡ଼ି ପରି ଲୋ,
ଥିଲକୁ ସିନା ତା'ଗୁଣ ।୫।

---

( ୧୯୭ )

ଶଙ୍ଖ ଅଟେ, ତୋର ମରଣ ହେଲା କି,
କାହିଁ ଫୁଙ୍କୁ ନାହିଁ ଶଙ୍ଖ ?
ଝିଅ, ପିଠା ଖାଇ ନଦୋଡ଼ ଶୋଇଚୁ,
ଉଠିବୁ ମାଡ଼ିଲେ ରାହୁଁ ।
ଦିଅ ହୁଳ ହୁଳି—ଯେତେ ପୁରବାଳୀ
ପାହୁଣ୍ଡ ମଣାଇଁ—ହିଅଲୁ ଅଣାଇଁ,
ବେଗେ ଲୋ ଏବୁଣ୍ଡି ତଅଁ ।୦।

କୁକୁଡ଼ା ଡାକିଲା—ଫସର ଫାଟିଲା
ଉଇଁ ଆସିଲା ଫୁଙ୍କାଅ ।
ବାହିଁଗଲା କାରେ ଅପଟେ, ଏଥିଲ
ଅଣ୍ଟା ଭିଡ଼ି ହୁଅ ଠିଆ ।
ଏତିକି ବେଳରେ ଦୋଳଡା ପାଇଁକି
ଲାଗଛୁ ତୁମ ଝିଅ ? ।୧।

ନାପଠ ଥେଣ୍ଟୁଆ—ପେଠ କାବୁରିଆ
କି ଜାତିଅ ଡ଼ଙ୍କା—ଶୁଣୁ ନାହିଁ କାହିଁ
ସଜ ହେଲଣି କନାଅଁ ।
ମୁନୁସୁଲ ଅପା—ହୋଇଲଣି ଖପା
ବାହାର ମେଲରେ ଗୁହାଁ ।୨।

ନୂଆ ଖଡ଼ଖଡ଼ି· ଜରି ଫୁଲ ଧାଡ଼ି
ଦୁଆରେ ଲଗାଇ ଦେଇ,
ଭେଣ୍ଡିଆ ବେହେରା ଅଡ଼ ହୋଇଗଲେ
ବୋହୂ ଅସେ ନଇଁନଇଁ ।

ବାହୁନାଇଁ ବାପଘର—ଝିଅ କାନ୍ଦେ କଇଁକଇଁ
ସବୁର ଆଖିରୁ ଝର—ବୋହିଯାଏ ଧାରଧାର
ରାତି ହେଲା ପାହାପାହା ।
ଛଳଛଳ ଚାହିଁ-                    କହେ ଟିକି ଭାଇ
ଅପା କାହିଁ ଯିବ, ମାଆ ? ।୩।

କାନ୍ଦଣା ସାଥିକି,                    ଏତିକି ବେଳରେ
ଶୁଭ ହୁଳହୁଳ ଢଆ,
ଗରଭଧାରଣୀ-                    ମାଆ ସାଆନ୍ତାଣୀ
ବୁକୁ ଫାଟି ଜଳେ ନିଆଁ,
ଶଙ୍ଖ-ମହୁରିଆ ଥିଲେ—ଭେଏଁ, ଫୁଉଁ ଫୁଙ୍କ ଦେଲେ
ପାଲିଙ୍କିରେ ବସେ ବର     ଘୁନ୍ତ କୁଣ୍ଡେ ମୋଟ ଭାର
ବାହୁଡ଼ିଲା ଘର ମୁହାଁ ।
ଝିଅ ଜନମର                    ବାପ ମାଆ ଘର
ଏଇମିତି ଦ'ଦିନିଆଁ ।୪।

ହୁଁ...ହୁଁ...
ବେହେରା ଭାଇରେ,...          ନେଏ କାନ୍ଧେଇରେ
ଆଗକୁ ଚାହିଁରେ...          ଯାଉଥା ବୋହିରେ
ଥାକୁଲି କନିଆଁ...          ଭାର ଓଜନିଆ
ସବାରି ବଣ ରେ,...          ବେଳ ସଳଖ ରେ
ନିଘୁଟ ବାଟ ରେ...          କି ଛଟପଟ ରେ
ବାଧା ପାଖେଇଲା...          କାନ୍ଧ ବଥେଇଲା
ଏକ୍ଷଣି ଏପଟେ...          ଝିଅ ଡ଼ାକିଗଲା,
ଅଦରିଲା ବୋହୂ ନାଆଁ ।୫।

———

( ୨୯୮ )

ବାସିଫୁଲେ ଭଅଁର ନ ବସେ
ଫାଟିଗଲେ ଥରେ ମନ, ଯୋଡ଼ିବ କିଏସେ ?
କହ, ଯୋଡ଼ିବ କିଏସେ ? ॥୦॥
ଖରରେ ନ ଥାଏ ଛର୍—
ଭାଙ୍ଗିଲେ ହାଣ୍ଡି ଖପର ।
ବୋହିଗଲା ପାଣି ସୁଅ—
ଉଜାଣି କି ଅସେ ?
କାହିଁ, ଉଜାଣି କି ଅସେ ? ॥୧॥
ଫଟାହାଣ୍ଡି, ଭଙ୍ଗାଶଙ୍ଖା
ଜୋଡ଼ ସରଗକୁ ଲେଖା
ଛାଳ ପଡ଼ା ଛୁଣ୍ଡା ପିନ୍ଧା ନୂଆ କି ହେବ ସେ
କାହିଁ, ନୂଆ କି ହେବ ସେ ? ।୨।
କଂସା ପିତ୍ତଳ ସମାନ
ନୁହଇ କେବେ ତ ମନ,
ଯେତେ କରମୂଲ ଦେଲେ
ବଦଳିବ କି ସେ
କହ, ବଦଳିବ କି ସେ ? ।୩।
ଦୁଅଗୁଡ଼ କାନ୍ଥି କାହିଁ ହୋଇଲାଣି ଗଢ଼ି
ଫୁଟେ କି ଗଛରେ ଫୁଲ, ନ ଧରଲେ କଢ଼ି ?
ପୁରୁଣାକୁ ପର କର—ନୂଆ ବୋଲି ଗୁଡ଼ ଧର
ଗଜାଇବ ଗଜା କାହୁଁ—
ମଞ୍ଜି କି ଗୁଡ଼ ସେ ? ।୪।

---

( ୧୯୯ )

ଭରା ଗୁନ୍ଦ ରାତରେ—
ହସ ପ୍ରୀତ ସାଥିରେ
ଝୁରେ ମନେ ଏକାକିନୀ ମାଳତୀ ॥୦॥

ବାସ ଗୁରୁ ସମୀରଣ ଫେରେ ବାର ବାର ଗୋ
ଫୁଟେ କଣ୍ଠୁ ବେଦନାର ଗୀତ ।
ଆଶା କରଇଁ ଶେଜ ବସ୍ଥାଇ ଆତୁରେ ଗୋ,
ପଥ ଗୁହିଁ ନିଶି ଯାଏ ବିତ ।
ଲଭ ଲଭ ଅବେ ଚନ୍ଦ୍ରାବତୀ ॥୧॥

ଅକୁହା ମରମ କଥା ଅକୁହା ରହିଲା ଗୋ,
ଦୁରୁଦୁରୁ ଥରେ ଯୋଡ଼ା ହାତ ।
ଫୁଟିଆ ଭଇଁଲା ଯେବେ ଝରି ଗଲା ତନୁ ଗୋ,
ଧରା ଏକା ନେଲା କାନ୍ନପାତ ॥୨॥

———

( ୨୦୦ )

ରାମ ବିଭା କାଳେ ଲୋ,—ଲକ୍ଷ୍ମଣ ବରଜାତ,
ବୋଇଲା, ସୁବର୍ଣ୍ଣ ବେଦୀତଳେ ଲୋ,
ଧଇଲେ ପାଟଛତ ॥୧॥

ଯୁଗ ତ ଚଳିଯାଏ ଲୋ,—ଯୋଗ ବଳେ ନାହିଁ,
ମନ୍ଥରା ବୋଲେ ହେଲେ ଲୋ,
କେକୟୀ ତ ବାଇ ॥୨॥

ରାତି ପାହୁ ଗଲେ ତ ଲୋ,—ରଜା ହେବେ ରାମ,
ଦଶରଥ ରଜାର ଲୋ,
ବୁଦ୍ଧି ହେଲା ବାମ ।୩।

କପଟ ମାଇପିବୋଲ—ବୁଢ଼ା ସତ୍ୟ ପାଳି,
ରାଇଜ ଛାଡ଼ି ରାମ ଲୋ,
ବନେ ଗଲେ ଚାଲି ।୪।

ମାମୁଁ ଘରୁ ଭରତକୁ—ଆଣି କଇକେଇ
ବୋଇଲେ ଏ ରାଇଜରେ
ରଜା ହୁଅ ତୁହ ।୫।

ଅମଙ୍ଗ ହୋଇ ଭ୍ରଥ ଲୋ, ଗଲା ରାମ ପାଶ,
ବନସ୍ତୀ କହେ ଭାଇ ହୋ,
ବାହୁଡ଼ାଣି ଆସ ।୬।

ରାଇଜ ପାଳ ତୁମେ ହୋ—ସିଂହାସନେ ବସି
ନାସ୍ତିକଲେ ରାମଚନ୍ଦ୍ର ହୋ,
ତା'କଥାରେ ହସି ।୭।

ବୋଇଲେ ପିତାର ସତ୍ୟ ହୋ—ପାଳିବଇଁ ମୁହିଁ
ଚଉଦ ବରଷ କାଳ ହୋ,
ବନରେ ବିତାଇ ।୮।

ଭ୍ରଥ ବୋଲେ ଭାଇ ହୋ—ଶୁଣ ସତ୍ୟ ମୋର
ସିଂହାସନେ ପାଦୁକା ହୋ,
ଥାପିବି ତୁମ୍ଭର ।୯।

ପରଜା ପାଳିବ ମୁଁ ହୋ—ରାମ ନାମ ଧରି,
ପାଦ ଛୁଇଁ ନିବାର ମୁଁ;
ଏହି ସତ୍ୟ କଲି ।୧୦।

———

( ୬୦୧ )

ପୋଖରୀ ତୁଠ ପଥର, ମୁଁ ବୋଲଇଁ
ପୋଖରୀ ତୁଠ ପଥର ।
ବେଶୀ ଘଷିହେଲେ ପାଦ ଛିଣ୍ଡିଯିବ
ତା'ର ତ ନାହିଁ ଖାତର ॥୧॥

ଏକୁଟିଆ ନୁହଁ ତୁହ, ମୁଁ ବୋଲଇଁ
ଏକୁଟିଆ ନୁହଁ ତୁହ ।
ଯୋବନ୍ତ ହେଲେଣି ତୋହପରି କେତେ
ମିଛୁଟାରେ କହୁ କହୁ ॥୨॥

ତୋ କଥା ତୋ ମୁହେଁ ଥାଉ, ମୁଁ ବୋଲଇଁ
ତୋ କଥା ତୋ ମୁହେଁ ଥାଉ ।
ଲଗେଇ ବଢେଇ ଅସହଣୀ ପଣେ
ଦହକ ଠା ଟଣାର ଯାଉ ॥୩॥

ଫୁଟା ମଲ୍ଲୀ ଫୁଲ ତେଜ, ମୁଁ ବୋଲଇଁ
ଫୁଟା ମଲ୍ଲୀଫୁଲ ତେଜ ।
ଭଣେଭଣା ମାଛି ଜନମଟା ଯିବ
ପୁଷ୍ପ ରକତକୁ ଖୋଜ ॥୪॥

———

( ୨୦୨ )

ଧଗ ମହକିଲା, ବଉଳ ଫୁଟିଲା
କୋଇଲି ଗାଇଲା କୁହୁ ।
ଏତକି ବେଳରେ ନାଗର ବିଦେଶୀ
ସଜନୀ ଲୋ, ମୋ ଜନମ ପୋଡ଼ିଯାଉ ॥୧॥

ପଲ୍ଲବଲେ ଅନାଁ ଚଉଲତା ଯେତେ
ଦକ୍ଷିଣା ପବନ ବାଜି ।
ଏକୁଟିଆ ସିନା ବାଉଁଶ ଶୁଖିଲା
ସଜନୀ ଲୋ, ହେଲି ତାହାଭଳି ଆଜି ॥୨॥

ବାଣ ନାଯୁମ ମୁଁ କେତେ ଦେଇଥିଲି
ଓଠ ହାତ ଚାରି ଧରି ।
ପୁରୁଷ ଭଅଁର କି ପରତେ ତାକୁ
ସଜନୀ ଲୋ, ଦେଲା ମୋତେ ପରକରି ॥୩॥

ଟଭା ଫୁଲ ପରି ଚେକି ଧରିଥିଲି
ଲୋକ ବସାକୁ ନଡ଼ରି ।
ଏ କୂଳ, ସେ କୂଳ ଦୁଇ କୂଳ ଖାଇ
ମଲି ମୁଁ କରମ ଝୁରି ॥୪॥

---

( ୨୦୩ )

ବନ୍ଧୁରେ.........
ଜାଣିଛୁ ନା ପରବାସୀ ତୁହ ?
ଅଦେଇ ଦନକୁ ପରଘରେ ଅଛୁ ରହ ॥୦॥

ନିଜ ଘର ବହୁତ ଦୂର—ଅଛି ଅପହୁଞ୍ଚ ସେ
ଦୁରୁଗମ ରାସ୍ତା ପୁଣି—ଭଗ୍ନ ବାଅ ବଢାସେ ।
ମନ ଟାଣି ଚାଲ ବାଟ ଗୁଳରେ ବାଟୋଇ
ବନ୍ଧୁ ବୋଲି ହସି,-କାନ୍ଦି, ଛଳରେ ଚୋରେ ଭଣ୍ଡାଇ
ଚଣା ଜଣରେଟି ବାଟ ମାରଣାଏ ଥାଇ ॥୧॥

ଏକକୁ ଅନେକ ବଳି—ଛଅ ଜଣ ଠାଣୁଆଁ
ମନେ ବିଷ, ମୁହେଁ ମଧୁ—ସେ ତ ଚୋରୁ ହାଣୁଆଁ ।
ସାଥୀ ହେଲେ ସବୁଯିବୁ ବିବେକ ତୋ ହଜାଇ
ସାହା କର ଗୁରୁ ନାଆଁ—ସଳଖ ରାସ୍ତା ତୁ ଗୁହାଁ ।
ଅପଣାର ଘର ରାସ୍ତା ନେବେଟି ସେ ମଣାଇଁ ॥୨॥



( ୨୦୪ )

ମନୁଆଁ, ବିଗୁର ତ ନ କଲୁ ତୁ ଦିନେ ।
ଭୋଳ ଖାଇ ମଞ୍ଜି ଯୋଉ ବସୁ ମନେ ମନେ ରେ ।୦।

ଅଳ୍ପ ପରେ କାଳ ଅସେ ଟୋ କାଳକୁ ଦିନେ ଖସେ
ତୁ ବୋଲୁ—ତୁ ବଡ଼ ହେଲୁ, ସତ କିରେ ତାହା ?
ସକାଳେ ତ ରବି ଉଏଁ ଦିନ ବଢ଼େ, ଲୋକ କହେ
ଦିନଶେଷେ ରଙ୍ଗ ମୁହେଁ ବୁଡ଼ି ଅସେ ଗୁହାଁ ରେ
ଛାଇ ତା'ର ଛପେ କାହିଁ ଅନନ୍ତ ଗଗନେ ।୧।

ଅସ୍ତ ସୂର୍ଯ୍ୟ ଅସ୍ତମୁଖୀ ନିତ ଦେଖେ ମେଲି ଆଖି
ଦେଖୁ ଦେଖୁ ଅଦେଖା ତୁ ଜାଣି ତୁ ଅଜଣା ।
ପଢ଼ୁଛୁ ପଦେ କଥା ଭଙ୍ଗ ଦେଖି ଲୁଇଁ ମଥା
ଅନ୍ଧାର ଘନାଇ ଆସେ ନାହିଁ କି ଚେତନା ରେ,
ଭବନଦୀ ପାର ହେବୁ କେଉଁ ଅୟୋଜନେ ? ।୨।

ଭରାଇ କାହିଁ ରେ ଭୋର ବସ୍ତୁର ଭା ଠାବକର
ଦୂରେ ତୁ ତ ଠେଲୁ, ତା'ରେ ନଜାଣି ଅପଣା ।
କାମ କ୍ରୋଧ ଲୋଭ ମୋହେ ବନ୍ଧୁ ବୋଲି ମଣୁ ସ୍ନେହେ
ଏଇ ସାଥି କରେ ଲାଗି ଯେ ଖୋଲୁଛନ୍ତି ଖଣା ରେ ।
ସତ ବୋଲି ହେଜୁ ତୁ ଯେ ଧନର ସପନେ ।୩।

ପ୍ରେମର ଅଞ୍ଜନ ଆଖି ଗୁରୁ କଞ୍ଜ-ପଦ ଦେଖି
ବସ୍ତୁ ନିବାରଣେ ଏକା ସେହୁ ଭୋର ସାହା ।
ଗତ ମୁକତ ନିବାସେ ଜୀବନର ଧନ ଶେଷେ
ଅନ୍ଧାରେ ସେ ଦୀପ ଜାଳି ବତାଇବେ ରାହା ରେ
ଗୁରୁବ୍ରହ୍ମା, ଗୁରୁବସ୍ତୁ ନମ ସେ ଚରଣେ ।୪।

---

( ୨୦୫ )

ତୁ ଦେଖିଯିବୁ ତ ଆ,'
ବର୍ଷା କି ଭଲ କେତେ ଦରବ, ସାଇତଚ ମୋ ମାଆ ।୦।
ମୁଣ୍ଡିଆ ଶିଖେ ମୟୂର-ନଚ୍ଚ-
ବଉଦ ଯେବେ ଚରେ,
ବାଉଁଶବଣେ କାହୁକ ପିଲା
ବରଷା ଗୀତ ଧରେ ।
ବସ ଦେ' ଝମକାଇ ଲେ ।୧।

(ପୁଣି) ଗଛଗହଳେ ଜୁଳୁଜୁଳିଆ
କୋଟିଏ ଆଖି ଠାରେ
ଝମଝମିଆ ବରଷାପାଣି
ଦନକୁ ରାତି କରେ ।
ରସ ଦେ' ଝୁମକାଇ ଲୋ ।୨।

ଚନ୍ଦନା ରାତି କଇଁ ଫୁଲୁଛି
ହସିହସିକା ନାଚେ
ସୁଲୁସୁଲିଆ ମହୁଲି ବାଆ
ପାଣିରେ ଢେଉ ବହେ ।
ରସ ଦେ ଝୁମକାଇ ଲୋ ।୩।

କୋଳରେ ଧରି କୁନି ଝିଅକୁ
ମାଆ ଗାଉଚି ଗୀତ
ଶୋଇ ପଡ଼ରେ ରୁକ୍ମଣୀ ନିଧି ।
ମାଡ଼ି ଆସୁଚି ଶୀତ ।
ରସ ଦେ' ଝୁମକାଇ ଲୋ ।୪।

କୋଉଠି ଭଉ— ଉଆଁସ ରାତି
କୋଉଠି ଜହ୍ନ ହସେ
ତାହା ଆଖିରେ ଲୁହ ଝରଣା
ଦିନ ରାତି କେ ହସେ ।
ରସ ଦେ' ଝୁମକାଇ ଲୋ ।୫।

---

( ୨୦୪ )

ଭୋଦେଇ ଚଉଠି ଜହ୍ନ, ମୁଁ ବୋଲଇଁ,
ଭୋଦେଇ ଚଉଠି ଜହ୍ନ,
ମୁହଁ ଗୁହଁ ତାର ଅନକୂଳ କଲି
ଅଡ଼ କରଦେଲା ଧନ ।୧।

ଓଠଲି ଦରହସା, ମୋ ଧନରେ,
ଓଠଲି ଦରହସା ।
ସରଗ ସାଇତା ଗନ୍ତାଘର ସେ ତ
ଆଖିରେ ବାନ୍ଧିଛୁ ବସା ।୨।

ରାଣୀ ନିଯୁମ ମୁଁ ଦେଲି, ମୋ ଧନରେ,
ରାଣୀ ନିଯୁମ ମୁଁ ଦେଲି ।
ଠେଲି ଦେଲା ସେ ତ, ଫୁଲ ପରାକର
ତାକୁ ଠେକି ଧରିଥିଲି ।୩।

ଚଉଠି ଜହ୍ନକୁ ଗୁହଁ, ସତ କଲି,
ଚଉଠି ଜହ୍ନକୁ ଗୁହଁ ।
ଅଭଦନେ ହେଲେ ପାହୁଣ୍ଡେ ନ ଯିବ
ଦୁଆର ବନ୍ଦ ମୁଁ ଢେଇଁ ।୪।

———

( ୨୦୭ )

ଆମ୍ବଡ଼ାଳେ ଡାଳେ ବଉଳ ହସିଲା,
ଚୋଲରେ ଢାଙ୍କେଇ ଚଣା,
ମହୁଆ ପବନ, ସାରା ବଣ ଧାଏଁ
ହେଲା ସତେ ବାଉ ବଣା ଲୋ,
ମଧୁ ମାସ ଆସିଲା,
ଫୁଲ ବାସେ ଦିଗ ମହକିଲା ଲୋ ।୧।

ପଲାଶ ଧରିଲା ନାଲିଆ କଣ୍ଠାରି
କୋଇଲି ଡାକିଲା କୁହୁ ।
ଗୁଣୁ ଗାଇ ବୁଲେ କାଳିଆ ଭଅଁର
ମାଗି ମାଗି ଫୁଲ ମହୁ ଲୋ,
ଥାଇ ଦକ୍ଷିଣୀ ବାଆ,
ତାକୁ ହୃଦକୁ ଡାକୁଛି ଗୁହାଁ ଲୋ ।୨।

ଦିଅଁ ଦେଉଳରେ ଘଣ୍ଟିଘଣ୍ଟା ବାଜେ
ଉଡ଼ୁଛି ଅବିର ଧୂଳି ।
ଫଗୁ ଖେଳଥିଲେ ଦୋଳଗୋବିନ୍ଦ
(ଅଜି) ଗୁଆଳୀଙ୍କ ଚୁଲିଲ ମିଳି ଲୋ,
ଫଗୁ ଦଶମୀ ଦିନ,
ହସୁଥିଲା ତ ବରଜବନ ଲୋ ।୩।

ବରଷକେ ପୁଣି ବନଲତା ଛୁଇଁ
ପିନ୍ଧିଛି ବସନ୍ତ ସାଜ ।

ସବୁରି ମୁହଁରେ ହସ ମାଖି ଦେଇ
ବୋଲଏ ସେ ଋତୁରାଜ ଲୋ ।
ସବୁ ଋତୁର ସାର
ନାହିଁ ସତେ ପଟାନ୍ତର ଛାର ଲୋ ।୪।

---

( ୨୦୭ )

ଉଡ଼ିଗଲା ଟେଣ୍ଟ୍ରାଳିଆ ଝାଡ଼ିଦେଲା ପର,
ରଙ୍ଗାଣ୍ଟିଆ ବାହୁନୁଚି ଦେଖି କୁହାବର ।
ଉଠେଇଲା ଭଲାମେଘ ଭେଦେଇ ଉଠାଣି,
କାଳୀଗାଈ ଚରିଗଲା କଅଁଳିଆ ଧାନ ହୋ ।୧।

ବସିବା ସଙ୍ଗାତ ଚାଲ ଟୋହର ମୋହର,
ଉଡ଼ି ଉଡ଼ି ଯିବା ଅମେ ମେଘ ରଙ୍ଗାଘର ।
ମେଘ ରାଇଜର ପରୀ ଭାରି ସୁନ୍ଦରୀଅ,
ଗେଲ କରି ଆଣିବି ମୁଁ ବନ୍ଦ ହୃଦରଅ ହୋ ।୧।

ସରୁ ସରୁ ନଈ ନାଳ ମହୁଳା ତା’ ପାଣି,
ବାଟେ ବାଟେ ଯାଉ ଅସ୍ତୁ ପିଉଥିବା ଗ୍ଲାଣି ।
ଭୋକ ନାଇଁ, ଶୋଷନାଇଁ ଯିବା ଅମେ ଚାଲ୍
ବାଟରେ ଖୋଇବି ଚତେ ଶୁଆଁ ଧାନ ଫୁଲ୍ ହୋ ।୨।

ଶୁଆଁ ଧାନ ଖାଇଖାଇ ଯିବୁ ଉଡ଼ି ଉଡ଼ି,
ବାଟେ ଘାଟେ ଥରେ ଥରେ ଡେଣା ଦବୁ ଝାଡ଼ି ।
ରଙ୍ଗ ରଙ୍ଗ ଟେଣ୍ଟ୍ରାଳିଆ ଯିବା ବନ୍ଧୁହୁର
ରହିବା ମଉଜକରି ନୋହୁ ସାତପର ।୩।

---

( ୨୦୮ )

ଅରେ ମନୁଆଁ,
ହସ କାନ୍ଦ ମିଶା ଏ ଦୁନିଆଁ ।୦।
ଆକାଶରେ ହସେ ଚାନ୍ଦ
ପାତିଛି ସେ ମାୟାଫାନ୍ଦ
ଢଳେ ଏଣେ ଚକୋରୀର
ଆଖି ଲୁହ ବୁହାରେ ।୧।
(ଦିନେ) ପୁଅ ଝିଅ ହସରେ ଯେ
ଘରଥିଲା ପୂର,
( ଆଜି ) ବଣପକ୍ଷୀ ହିଂସାବଳେ
କଲା ଦୂରଜୁର ।
ହସୁଥିଲା ଯେ ଅଗଣା
କାନ୍ଦେ ଆଜି ପଥ ବଣା
ମଶାଣୀର ଭୂତ ହସେ
ଜାଳି ଚିତା ନିଆଁରେ ।୨।
(କାହିଁ) ପଞ୍ଜୁରୀର ପୋଷା ଶାରୀ
ଉଡ଼ିଗଲା ବନେ,
କାଳ ପେଚୁ ବସି ରବେ
ରାଜ ସିଂହାସନେ ।
ଚାଲି ଧନ ଝୁରି ଝୁରି
ଡାକିଲେ କି ଆସେ ଫେରି
ହାତ ପତାଇଲେ ଲୁହ—
ଦୁଇଟୋପା ଥୁଆ ରେ ।୩।

———

( ୬୦୯ )

ରାମ ହେଲେ ବନବାସୀ ପିତାର ବଚନ ପାଳି,
ନହୁଲ୍ ବୟସୀ ସୀତା ପାଦ ନ ପାରଇ ଚାଲି ।
ରଙ୍କାର ଦୁଲଣୀ—ରାମର ଘରଣୀ
ଅଲ୍ଅଲୀ ସେତ ଭାବୁ—ନ ଜାଣଇ ବାଟ ଚାଲି
(ତାର) ବହେ ଧାର ଆଖିପାଣି—
ଗଲ୍ଦନ ଭାଲଭାଲି ।୧।

ଭାଇ୍ବନ୍ଧୁ ଘର—ଛଡ଼ ସାତପର
ନ ଶୁଣିଲେ କାହା ଅଳି—
ରାମ ସବୁ ଦେଲେ ଟାଳି,
ଭଗାର ମୁହଁରେ ହସି
ବୋଳ ଦେଇଗଲେ କାଳି ।୨।

---

( ୬୧୦ )

ପୁରୁଷ— ହେମହରଣୀ, ମଥାର ମଣି,
କରନା ରାଣୀ, ନାହିଁ ରେ ।

ସ୍ତ୍ରୀ— ଉପରେ ହସ, ଭିତରେ ବଷ,
ଛଟେଛେ କେ ଜାଣି ନାହିଁ ରେ ।୦।

ପୁରୁଷ— ଅଖିର ଛୁରୀ-ମାର ନାରଗୀ,
ମରମ ଘାର-ଦେଇଛୁ ସାର
ତୋରେ ସୁମର-ଅରେ ଚତୁରୀ
ବସିଛୁ ବାଟ ଚାହିଁ ରେ ।୧।

( ୨୨୩ )

ବନ୍ଧୁ ! ଛି, ଛି, ମାରନା ଲାଜେ, ଗଳସର ।୦।

ଅଙ୍ଗ ନୁହେଁ, ସେ ଯେ ନାସ୍ତି ମସ୍ତି ଛୁଟି ସେ
ତା'ରେ ଜୁହାରେ ହୃଷ୍ଟୁଁ ଦେ'ନା ମୋରେ ଘାରି ରେ
ନାଗର ରସିଆ—ଭ୍ରୁ'ରେ ଦଗାଦିଆ
ଫୁଲ ମଧୁପିଆ—ମାନ ଅମାନିଆଁ
ମରେ ସାରି ରାତି ଝୁରି ଝୁରି,
ଭୋରେ ଝୁରି ଝୁରି
ଝୁରି—ଗଳସର ।
ବନ୍ଧୁ, ଛି, ଛି, ଛି,
ମାରନା ଲାଜେ ଗଳସର ।୧।

---

( ୨୨୪ )

କୋଇଲି କହିଲା ଆମ୍ବ ବଉଳାଇ
ଫଗୁଣ— ଚଇତ ମାସ ।
ବଉଳ ଅଧର—ଦହଯାକ ବୋଲି
ଦକ୍ଷିଣା ବାଆ ହରଷ ।
କଣ୍ଠ ଦେଇ, ଧନ ଗଲା ପରବାସ
କେଡ଼େ ସରାଗରେ ବାଟ ଗୁହିଁଥିଲି
ଦଇବ ଭାଙ୍ଗିଲା ଆଶ ।୧।

ମେଘ ତ ଢଙ୍କୁଣି  ଚଇତ୍ରମଥା ଲୋ,
ବଇଶାଖ ଝାଣ ଖରା,
ଝାଳ ଗମଗମ  ବହୁ ଯାଉଥିବ
ଧନ ମୋର ମନମରା ।
ଝୁରି ମଲି, ମୁଁ ଯେ ଜହ୍ନରାତି ସାରା ।
ବଉଳମଲ୍ଲୀରେ  ମାଳ ଗୁନ୍ଥିଥିଲି
ଅକାରଣେ ହେଲା ପରା ।୨।

ଆଷାଢ଼ମାସିଆ  କିଆ କେତକୀ ଲୋ,
ମହମହ ବାସ ଦେଲା,
କହିଥିଲା ଧନ  ରଥକୁ ଆସିବ
ବାହୁଡ଼ା ତ ବିତିଗଲା ।
ଆସି ଏବେ, ଧାରଣିରାବଣ ହେଲା
ଲଗାଣ ବରଷା  ଘଡ଼ ଘଡ଼ି ରଡ଼ି
ଡାହୁକ ବେଙ୍ଗ ଡାକିଲା ।୩।

ଭେଦୁଅ ଅଣୀଣ  ଓଷା ବରତ ଲୋ,
ପଛକୁ ପଛ ଲାଗିଛି
ଝୁଲଣ ଯାତକୁ—  ଯାଇଥିଲେ ଦୁହେଁ
ସାଥୀ ହୋଇ, ହେତୁ ଅଛି
ମନରୁ ମୁଁ, ପାରୁ ତ ନାହିଁ ମୁଛୁଛି ।
ଦଶହରା ଦିନ  ଦେବୀ ମେଢ଼ ପାଖେ
ହସାହସି ଗଲା ଲୁଚି ।୪।

କାର୍ତ୍ତିକ ମାସ          ଶରଦଜହ୍ନ ଲୋ,
ଲହଟିଲା ଲଜୁଆ ଢଉ,
ପାହାନ୍ତି ଗାଧୁଆ,          ଚଉରା ମୂଳରେ
ପଞ୍ଚ ମୁ ହୁଜର ଟିହା ।
ସବୁ ଅଛି, ମନର ମୋ ଅପାଶୋଷ ।
ମଗୁଶିର ମାସେ          ଜହ୍ନେଇଁ ପାଖରେ
ଖୁଦ ହେଇ ବସୁଁ ପରା । ।୫।

ପୁଷ, ମାଘ ମାସ          କାଠୁଆ ଜାଡ଼ ଲୋ,
ଥର ଉଠୁଥାଏ ହାଡ଼,
ଭାଇଣି କୁଲେଇ-          ବୁଣୁଥାଏଁ ବସି
ଖରକୁ କର ଉହାଡ଼
ହାତଗୁଡ଼ି, କହେଁ ଅମାନିଅଁ ବଡ଼,
ହଟୁଣୁ ପଣତ—          ଟାଣି ହସୁଥିବ
ଚେଲାଇ କହେଁ ମୁଁ—ଗୁଡ଼ ।୬।

---

( ୨୧୫ )

ନିଦଭାଙ୍ଗ,— କେତେ ରହୁଛୁ ଅଜ ଟଣାଇ ରେ
ଘୁମାଇଁ ରହୁଲେ ଘୁମ ଭାଙ୍ଗିବ ତ ନାହିଁ ରେ ।
ଚିଆଇଁ ଥିଲୁ ତୁ ଯେତେବ
ଶିଆଁଇ ଥିଲେ ସରବେ
ସୁରନ୍ଦା ଘରଟର ଡୋଉ ବାପ ମାଆ ଭାଇ ରେ
କେହୁ ତ ପାରିଲେ ନାହିଁ ଏ ନିଦ ଭଙ୍ଗାଇ ରେ ।୧।

ଚେତାଥିଲେ ସବୁ ଚୋର, ଘୁମାଇଲେ ସାଉପର
ସାହା ଏକା ମାଟି, କାଠ, ନିଆଁ ର ଉଦ୍ଧାର ରେ ॥
ତୋ ଧନ, ତୋ ଦଉଲତ
ନିକଟରେ ଉଭିଲ ତ
କହ କେତେ ଦେଲୁ, କେତେ ପାଇଲୁ ତୁ ବୋହୂ ରେ ।୨।

---

( ୨୯୭ )

ଯମୁନା କଦମ୍ବମୂଳେ    ମାଧବୀଶାଖାର ତଳେ,
କେ ବଜାଏ ବଂଶୀ ଧୀରେ
ରାଧା ରାଧା ବୋଲି
ସେ ଚିକ୍କଣ କାଳିଆ ॥
ଜଳ ଅଣିଯାଉଥିଲି    ବାଟଭାଙ୍ଗି ଗଲି ଭୁଲି
ତୁଠରେ ସେ ହେଲା ଠିଆ
ସରମରେ ମଲି,
ସେ ଚିକ୍କଣ କାଳିଆ ।
ଘୁଞ୍ଚିକ ପାଣିରେ ପଶି    ହାବୁକା ମାରି ସେ ଅସି
ଅଧରକେ ଖସାଇଲା
ଭରା ମୋ କଳସି
ସେ ଚିକ୍କଣ କାଳିଆ ॥
ବରଜ ବଜାରେ ସହି ।    ବାଟ ଚାଲିପାରୁନାହିଁ
କହିବୁ ସଜନି ।
ସତେ ହେଲା ମୋର କାଳ
ସେ ଚିକ୍କଣ କାଳିଆ ॥

ବଇଁଶୀ ସେ ନଧରବ          ରାଧା ରାଧା ନଡ଼ାକବ

ଲୋକହସା କର ମୋତେ
କି ସୁଖ ପାଇବ ?
ସେ ଚକ୍‌କଣି ଜାଳିଅ ॥

---

( ୨୧୭ )

ସଜନୀ ରେ ଅଜ ନ ଯା' ପାଣିକି
ହୁରୁ କୁହାର, ସେ ଶଠ ନାଗର,
ନିପଟ କପଟ ବେଣୁପାଣିକି ॥ ୦ ॥

ନବେଳା ଭେଟିଲେ ଚୁହିଁରହେ ଖାଲି,
ଅଖିରେ ତା'ର ଗୋ ମତି ଯାଏ ଭୁଲି ।
ଚୁର ଅଖି ଯେବେ, ଯାଏ ମିଳ ସଖି,
ମନ-ପରାଣ ସେ ନିଏ ଟାଣିକି ।୧।

ସଞ୍ଜବେଳେ କୁଞ୍ଜକାନନ ପାଶରେ
ଚୁହିଁ ରହୁଥାଏ ତୋହର ଅଶରେ ।
ଲୁଚି ଲୁଚି ପଛୁ ଛଇଳ ନାଗର,
ଚମକେ ମୁଁ ସଖି, ଟାଣେ କାନିକି ।୨।

ସଜଳ ଅଖିଟି କେତେ କଥା କହେ
ମନ-ରାଗ ମୋର ମନେ ମନେ ରହେ ।
କଥା ନକହୁ ମୋ' ଗତି ନଥାଏ
କେତେ ଏଡ଼ିବି ସେ ଚୁଟୁବାଣୀକି ? ।୩।

ଲଭ ଲଭ ଅସେ ସଞ୍ଚର ଅଲୁଅ
ଝର ଝର ପଡ଼େ ଝୋପି ଝୋପି ଲୁହ
ସରମେ ସରମେ ଫେରେଁ ଲୋ ଘରକୁ,
ସପନରେ ଦେଖେଁ ସେଇ ଠାଣିକୁ ।୪।

( ୨୧୮ )

ରସିକ, ତୁମେ ପରା ମୋର ଜୀବ ଅଧିକ ।୦।
ତୁମେ ଦଳାଖେଚଡ଼ି ଥାଳୀ
ତୁମେ ପାନମହୁରୀ ବଡ଼ି ।
ଖଣ୍ଡିଆ ବଟାରେ ଯତନେ ସଜଡ଼ା—
ବାସି ଝିଲପାନ ନାଲିଅ ପିକ । ୧ ।
ତୁମେ ମୋର ହଳଦୀ ବଟା
ମୁଢ଼ୀ ସଙ୍ଗେ ପିଆଜ କଟା ।
କଞ୍ଚା ମରିଚରେ ସନ୍ତୁଳଣି ତୁମେ—
ଭୁଟ ଭଜା ମିଶା ମଜକ ଯାକ । ୨ ।
ତୁମେ ମୋର ଛେନା ପତୁଆ
ଖଟା ମିଠା ଘିଅ ଗଗୁଆ
ବୁଢ଼ାକାଳ ବର, ପାଚିଲା ଚୁଟିଆ
ଝଣ୍ଡିଆ ଦୁଆରି ଘୋଡ଼ା-ଗୃରୁକ । ୩ ।
ତୁମେ ପିଠୁପଡ଼ିଆ ଶାଢ଼ୀ
ସଂକଟୁଲି ସକ୍କୀ ବାଡ଼ି,
କୁକୁର ଗଳାର, ସଜ ମଲ୍ଲୀହାର
ଢଖାରୁ ଫୁଲର ପାଖୁଡ଼ା ପୋକ । ୪ ।

( ୨୧୯ )

ଭୂଇଁ ଛୁଇଁ ଥାଏ ଦୁବ,
ନାହିଁ ବୋଲି ମଥା ଟେକା ଗରବ;
ତା'ର, ଦଅଁ ମୁକୁଟରେ ଠାବ ଲୋ,
କଳାମାଣିକ ମୋର ।
ଡେଙ୍ଗା ମୁଣ୍ଡରେ ଠେଙ୍ଗା ପାହାର ।୧।

ଗଛ ଅଗଡାଳ ଫଳ,
ଭୂଇଁରେ ପଡ଼ିଲେ ଛତରଖାଲ
ଉଞ୍ଚଥାନ ସିନା ହେଲା କାଳ ଲୋ
କଳାମାଣିକ ମୋର,
ଉଞ୍ଚକାଂକ୍ଷୀ-ବୋହୂ ଭଙ୍ଗେ ଘର ।୨।

ଓସ୍ତ ପଥର ଡେଙ୍ଗି,
ଲମ୍ବ ବୋଲି ପର ଉପରେ ଭଙ୍ଗି
ସତେ, ପବନ ଦେଇଛି ସଙ୍ଗି ଲୋ,
କଳାମାଣିକ ମୋର
ଟାଣିଥାଏ ମୋଟା ଗଣ୍ଡି ତାର ।୩।

ଉଞ୍ଚକୁ ଚୁହିଁକୁ ଯେବେ,
ଟାଣିଲର ଠେକା ଭିଡ଼ିଥା' ତେବେ
ଅଜ ଖାତର ନ ଥିବ କେବେ ଲୋ
କଳାମାଣିକ ମୋର,
ହାତେ ମାପି ତୁ ଚୁଖଣ୍ଡେ ଚୁଲ ।୪।

---

( ୨୨୦ )

ମଥାନ ଉପରେ ଡାମର୍ କାଉଟା
ରାବ ଦେଲା ରାହାରାହା ।
ମୁଠି ମୁଠି କର ଗୁହଳ ବାଢ଼ିଲି
ଧନ ବାହୁଡ଼ିଲା ସଟତ ଅଜ
ମୋ ମନ ଗଲା ଉଲ୍ଲସି
ଦେବା ଦଅଁକୁ ଧଣ୍ଡା ତୁଳସି ।୧।

ଭାତ ନ ଖାଇଲା ବାଢ଼ିଲା ବଳା ତ
ଉଡଉଡ଼ି ଗଲା ଚଳା,
ଅଖିରୁ ଦ'ଧାର ଲୁହ ଝରାଇଲି ମୁଁ
ବେଗେ ଦୁଆରଟା ଦେଲି କିଳ
ମୋ ମନ ଗଲା ତ ଭାଙ୍ଗି
ମଲ୍ଲୀମାଳ ଗୁନ୍ଥା କାହାଲାଗି ? ।୨।

ଜାଗରଦୁଆଅ କଣ୍ଠେ ବଳାଲା ତ
କିଏ କି ମନ୍ତ୍ର କଲା ?
ଡହଳବିକଳ ହେଲି ଦନ ରାତି
କର ଅଙ୍ଗୁଠି ଗିରା ସରିଲା,
ମୋ ମନ କାହିଁ ନମାନେ ।
ପାସୋ ଶୁଅ ପଦ ଉଡେ ବନେ ।୩।

——

( ୨୨୧ )

ଯଉବନା ଚମ୍ପାବତୀ ।
ଏ ରଙ୍ଗ କି ରହିବ ତୋର ?
ଆଜର ଏ ସୁନା ଦେହ, କାଲି ହେବ ନାରଖାର ।୧।

ଆଜି ବୁକୁଠେଲ ଛଇ,
କାଲକୁ ଯିବ ଉଭାଇ ।
ହାତରେ ସଚନ୍ଦ୍ରଗୁନ୍ଧ ଧରବୁ କବ ବଗୁର ।୨।

ଦ'ଦିନିଅଁ ରଙ୍ଗ ଖେଳ
ପାଣି ଫୋଟକାର କାଳ
ଆଖି ପିଛୁଳାର ସାଥୀ, କାହିଁକି ଲୋ ଏ ଗୁମର ? ।୩।

କେତେ ଦିନ ଯଉବନ,
ସେ ତ ଦିନର ସପନ ।
ସେ ଘୁମ ଭାଙ୍ଗିଲେ ସଖି, ଝୁରିବାଟି ହେବ ସାର ।୪।

---

( ୨୨୨ )

ବଣମଲ୍ଲୀ ଲୋ,
କାହାପାଇଁକି ଏ ଗୁମର ତୋର ।
କାଲିଆ ଭଅଁର ପରି ନୁହଇ କି ହାର ।୦।

ତୋ କାନରେ ମନ୍ତ୍ର ଫୁଙ୍କି
ମାରି ଦେଇଗଲା ଫାଙ୍କି
ଦଗାଦିଆ ମହୁପିଆ କହୁ ବାରବାର
ତୋ କଥା ତୁ ଥରେ ହେଲେ ନଭାଳୁ ବଗୁର ।୧।

( ୨୨୪ )

ରସ ଛୁଛୁଛୁ, ରସ ଛୁଛୁଛୁ, ଛୁଛୁଛୁ ଛୁଛୁଛି ।
ତୁମ୍ଭ କାଞ୍ଜି ପାଣିକି ଏତେ ଟେକ
ହଳଦ କହୁଛୁ ସବୁ ବେଳ
ଛାଳି କୋଟସ୍ଥିକା  ପଣ୍ଡୁରେ କାଏ ଦେସ
କହୁଛୁ ସୁନ୍ଦର ଲେଖ ।୧।

ରସ ଛୁଛୁଛୁ, ରସ ଛୁଛୁଛୁ, ଛୁଛୁଛୁ, ଛୁଛୁଛି,
ତୁମ୍ଭ ଗୃକୁଣ୍ଡା ଶାଗକୁ ପରସିଲ୍
(ପୁଣି) ଟେକ କହିବାକୁ ଭରସିଲ୍
ପିଠି ଅରସି ତ  କୁଣ୍ଡଳ ନଚେରଣ
କଣାରୁ ପୂଲକୁ ତୁ ରସିଲ୍ ।୨।

ରସ ଛୁଛୁଛୁ, ରସ ଛୁଛୁଛୁ, ଛୁଛୁଛୁ, ଛୁଛୁଛୁ,
ତୁମ୍ଭ ମାଠିଆର ମୁହଁ ଥିଲା ଗୃହିଁ
ଅଲକ୍ଷଣୀ ବାଆ ଗନ୍ଧନାହିଁ
ପଢ଼ଣା ଚକୁଳି  ଦେଖି ଘଟି ରାଙ୍କା
ଗୈବାଇବାକୁ ତୁ ଧାଇଁ ପାଇଁ ।୩।

ରସ ଛୁଛୁଛୁ, ରସ ଛୁଛୁଛୁ, ଛୁଛୁଛୁ, ଛୁଛୁଛୁ ।
ତୁଚ୍ଛା ଦଇବକୁ ବସି ଚକ୍ରୁ ଥାଉ
ଆପଣା କଥାକୁ ତୁଚ୍ଛ ନାହୁଁ
ଏ ହାତ ନଅଁକୁ  ବଢ଼ାଇଲେ ଭଲ
ସେ ହାତ ଫୋଟକା ହେବ ବାହୁଁ ।୪।

ରସ ଛୁଛୁଛୁ, ରସ ଛୁଛୁଛୁ, ଛୁଛୁଛୁ, ଛୁଛୁଛୁ

———

( ୨୨୫ )

ମଧୁପୁରେ ବନ୍ଧୁଅ ରହିଲ ।
ବାହୁଡ଼ିବ ବ୍ରଜପୁରେ କଥାଦେଇ ଥିଲ ଲୋ ।
ରହିଲ ମହୁଅ ବାଆ
ନାହିତ ପସରଣି ନାହି
ମଥୁର କାଳିଆ ସେତ ଅନ୍ତକପଟିଆ
ଆଖିରୁ ଅନ୍ତର ହେଲେ
ମନୁ ପାଶୋରିଲ ଲୋ ।୧।
କୁରୁଳା ରସରେ ରସି
ନଟିଆ ବରଜ ଶଶି
ମାଧବୀ କୁଞ୍ଜରେ ବସି
ଝୁରେ ଦବାଇଶି
ପୋଡ଼ା ପୋଡ଼ା ଆଖିରୁ ମୋ
ଲୁହତ ଝରିଲ ଲୋ ।୨।
କଳା ଘନ ଅସେ ଘେର
ନାଚେ ମୟୂର ମୟୂରୀ
ପାଶେ ତ ମୋହର
ତା ବାହୁଡ଼ା ବାଟ ଗୁହିଁ—
ଆଶା ନ ପୂରିଲ ଲୋ ।୩।
କହନ୍ତୁ ସଜନୀ ତାକୁ
ଝୁରିଲ ମରିବାକୁ
କାଏ କହୁଥିଲ ସତେ
ମୂଲ୍ୟ ଫୁଲାଂକୁ
ରାଧା ବାଧା ଶୁଣି ପୁଣି
ତା ଗୀତ ସହିଲ ଲୋ ।୪।